

# ପଲ୍ଲୀକବି ନନ୍ଦକିଶୋର ସ୍ମାରକୀ ବକ୍ତୃତା

୧୯୯୩

ଡକ୍ଟର କୃଷ୍ଣଚରଣ ବେହେରା

# "ବିରୂପାର ବିକ୍ଷୁବ୍ଧ ବୀଚି"

**ଡକ୍ଟର କୃଷ୍ଣଚରଣ ବେହେରା**

ପରିଣତ ବୟସରେ କବି ନନ୍ଦକିଶୋର ବଳ (୧୮୭୫ - ୧୯୨୮) 'ବିରୂପାତଟେ' ଶୀର୍ଷକ ଏକ ଦୀର୍ଘ କବିତା ଲେଖିଥିଲେ। ଆପଣାର ଆବାଲ୍ୟ ସାଥି ବିରୂପାର ଧାରା ସହିତ ନିଜ ଜୀବନର ନିଗୂଢ଼ ସଂପର୍କ ଦର୍ଶାଇ ତହିଁରେ ସେ କହିଛନ୍ତି ଯେ - ବିଶ୍ୱ ସଂସାର ସହିତ ରହିଛି ତାଙ୍କର ଏକାତ୍ମଭାବ। ତାଙ୍କ ଭିତରେ ଯେଉଁ ଆତ୍ମା ବିଶ୍ୱ ସଂସାରରେ ମଧ୍ୟ ସେହି ଆତ୍ମା ବିଦ୍ୟମାନ।

ସେହି ଏକ ଆତ୍ମା, ନୋହିଲେ ମୋ ଆତ୍ମାରେ କିଂପାଇଁ
ସାରା ସଂସାରର ମାୟାରେ ଯାଏ ମୋ ପ୍ରୀତି ଧାଇଁ ?

x x x x

ଆତ୍ମା-ବିହଙ୍ଗମ ଉଡ଼ଇ ଭୂମା କଳ୍ପନାୟରେ
ଯେତେଦୂରେ ଉଡ଼େ ସେତିକି ଆଶା ଜାଗେ ଅନ୍ତରେ।
ଅନନ୍ତ ଆକାଶେ ଅନନ୍ତ କାଳ ଉଡ଼ିବ ପରା
ଅନନ୍ତ ଉନ୍ନତି ତା'ଲକ୍ଷ୍ୟ କେବେ ନ ଦେବ ଧରା।
ଧରାଦେଲେ ହେବ ସନ୍ତୁଷ୍ଟି, ସନ୍ତୁଷ୍ଟି ହିଁ ମରଣ
ମରଣ-ଅତୀତ ଶାଶ୍ୱତ ମାନବର ଜୀବନ - ସନ୍ଧ୍ୟା ସଂଗୀତ।

ସନ୍ତୋଷ ତାଙ୍କ ପକ୍ଷରେ ମୃତ୍ୟୁ ସଦୃଶ। ଉନ୍ନତିର ଶେଷ ପାହାଚରେ ପହଞ୍ଚିବା ପାଇଁ ସେ ନିଜର ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ସାଧନା କରି ଚ୍ଲିବେ - ମରଣାତୀତ ବିଭିନ୍ନ ଜନ୍ମରେ ମଧ୍ୟ। ସାହିତ୍ୟ ସୃଷ୍ଟି ମଧ୍ୟରେ ହିଁ ନିଜର 'କ୍ଷୁଦ୍ର କବି ଜୀବନ' ଚରିତାର୍ଥ ହେବ ବୋଲି ତାଙ୍କର ବିଶ୍ୱାସ। ସେହି ସୃଷ୍ଟିର ଆବେଗକୁ ନନ୍ଦକିଶୋର ବହ୍ନି ସହିତ ତୁଳନା କରିଛନ୍ତି ଏବଂ ଆବେଗ-ବହ୍ନିକୁ ଯେତେ ସଂଯତ କଲେ, ତାହା ସେତେ ଜଳି ଉଠୁଛି ବୋଲି ଅନୁଭବ କରିଛନ୍ତି। ଜୀବନର ଲକ୍ଷ୍ୟ ସାଧନ ପଥରେ ପ୍ରାପ୍ତି ଓ ପ୍ରତ୍ୟାଶା ଘେନି କବି-ଚିତ୍ତର ଆଲୋଡ଼ନ ଚମତ୍କାର ଭାବରେ 'ବିରୂପା ତଟେ' କବିତାରେ

ପ୍ରକଟିତ ହୋଇଛି । ବସ୍ତୁତଃ ପ୍ରାୟ ତିରିଶ ବର୍ଷର କବିଙ୍କ ସାହିତ୍ୟ-ସାଧନା ମଧ୍ୟରେ ଆମେ ସେହି ଆଲୋଡ଼ନର ଫଳଶ୍ରୁତି ଲକ୍ଷ୍ୟ କରି ପାରିବା ।

**ଶିଷ୍ୟ - କ୍ରାନ୍ତଗୁରୁ**

'କର୍ମ' (୧୮୯୫) ଶୀର୍ଷକ ପ୍ରବନ୍ଧ ରଚନାରୁ ସାହିତ୍ୟ-ସରଣୀରେ ନନ୍ଦକିଶୋରଙ୍କର ଯାତ୍ରାରମ୍ଭ । ପ୍ରବନ୍ଧଟି ମଧ୍ୟରେ ନନ୍ଦକିଶୋର ମଣିଷ-ଜୀବନରେ କର୍ମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି ଏବଂ ଯଥାଯଥ ଭାବେ କର୍ମ ସମ୍ପାଦନ କରିବାକୁ ହେଲେ ଆଶା, ଉଚ୍ଚ ଲକ୍ଷ୍ୟ, ଗଭୀର ଚିନ୍ତା, ସାହସ, ଧୈର୍ଯ୍ୟ, ଅଧ୍ୟବସାୟ, ସ୍ୱାଧୀନତା, ପ୍ରତିଜ୍ଞା, ସାଧୁତା, ଶୃଙ୍ଖଳା, ସନ୍ତୋଷ ଆଦି ଗୁଣାବଳୀ ଅତ୍ୟାବଶ୍ୟକ ବୋଲି ସୂଚାଇଛନ୍ତି । ପ୍ରସଙ୍ଗକ୍ରମେ ପ୍ରବନ୍ଧରେ ସେ ଗୋଟିଏ ଚମତ୍କାର ଉପାଦେୟ କଥା କହିଛନ୍ତି - କର୍ମ 'ଆନନ୍ଦଭଣ୍ଡାର' ସ୍ୱରୂପ । ତାଙ୍କରି ଭାଷାରେ କହିଲେ - "କର୍ମ କଲେ ମନରେ ଯେ ରୂପ ବିମଳ ଆନନ୍ଦର ଉପଲବ୍ଧି ହୁଏ, ତାହା ସାଙ୍ଗରେ ଆଉ କାହାରି ତୁଳନା କରାଯାଇ ନ ପାରେ । କର୍ମ-ପରାୟଣ ମନୁଷ୍ୟ ସଦା ପ୍ରଫୁଲ୍ଲ । ନୈରାଶ୍ୟ ତାହାର ହୃଦୟରେ ସ୍ଥାନ ପାଏ ନାହିଁ । ଦୁଃଖ ଶୋକ ତାହାକୁ ତେତେ ଅଭିଭୂତ କରି ପାରନ୍ତି ନାହିଁ । ଅବସାଦ ତାହା ଜୀବନରେ ପ୍ରବେଶ କରିପାରେ ନାହିଁ । ଯଦି କରେ, ତେବେ ତାହା ଅଳ୍ପକାଳ ସ୍ଥାୟୀ ହୁଏ ।" (ପୃଷ୍ଠା ୧୦୬୧) ସେହି କର୍ମମାନଙ୍କ ମଧ୍ୟରେ ସାହିତ୍ୟ ସୃଷ୍ଟି ବି ଅନ୍ତର୍ଭୁକ୍ତ । ଜଣେ ସ୍ରଷ୍ଟା ପକ୍ଷରେ ସାହିତ୍ୟ କର୍ମ 'ଆନନ୍ଦ ଭଣ୍ଡାର' ନହେବ କିପରି ? କୋଡ଼ିଏ ବର୍ଷ ବୟସ୍କ ଯୁବକ ନନ୍ଦକିଶୋରଙ୍କ ପକ୍ଷରେ ସେତେବେଳେ ଏହି ଉଦ୍ଦୀପ୍ତ ଉପଲବ୍ଧି ଆମକୁ ବିସ୍ମିତ କରେ ।

ତା'ପରେ 'ପୁଷ୍ପ' (୧୮୯୭) କବିତାରୁ ନନ୍ଦକିଶୋରଙ୍କ ଜୟଯାତ୍ରା । କବିତାଟି ଏକ ଓଡ୍ ବା ସଂବୋଧ-ଗୀତି । ଏଥିରେ 'ବିନୟର ଆଦର୍ଶ' ପବିତ୍ର ପୁଷ୍ପର ଗୁଣଗାନ କରିବା ସଙ୍ଗେ ସଙ୍ଗେ କବି ଆପଣା ଜୀବନକୁ ତାହା ସହିତ ତୁଳନା କରିଛନ୍ତି । ଶେଷରେ, ଜୀବନର କଷଣ ଓ ଅଶାନ୍ତି ମଧ୍ୟରେ ପୁଷ୍ପକୁ ପୁଚ୍ଛା କରିଛନ୍ତି -

କାହିଁ ସେହି ଶାନ୍ତି ମୁକ୍ତି ପ୍ରେମର ଆଧାର
ଯା ବିହୁନେ ଏ ଜୀବନ ସ୍ୱପ୍ନର ଆକାର ।
କାହିଁ ସେ ଅକ୍ଷୟ ଉତ୍ସ ଆରେ ପୁଷ୍ପବର
ଯହୁଁ ସମ୍ଭବିଲା ସୃଷ୍ଟି ତୋହର ମୋହର ?

'ପୁଷ୍ପ' କବିତା କିମ୍ବା 'କର୍ମ' ପ୍ରବନ୍ଧ ରଚନାରେ ନନ୍ଦକିଶୋର ଯେ ଆପଣାର ସାଧକ-ଗୁରୁ କବି ମଧୁସୂଦନ ରାଓଙ୍କ ସମଧର୍ମୀ ରଚନା ଦ୍ୱାରା ଅନୁପ୍ରାଣିତ ହୋଇଛନ୍ତି, ଏଥିରେ ସନ୍ଦେହ ନାହିଁ । ଛାତ୍ର ଜୀବନରେ, କର୍ମ ଜୀବନ ତଥା ସାହିତ୍ୟିକ ଜୀବନର ପ୍ରଥମ ପର୍ବରେ ସେ କବି ମଧୁସୂଦନଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ । ସ୍ୱୟଂ ନନ୍ଦକିଶୋରଙ୍କ ଭାଷାରେ - '' ମୁଁ ନାନା ଭାବରେ ତାଙ୍କ ନିକଟରେ ଋଣୀ । ତାଙ୍କରି ପ୍ରତିଷ୍ଠିତ ବିଦ୍ୟାଳୟରେ ଶିକ୍ଷିତ, ତାଙ୍କରି ଛାତ୍ର, ତାଙ୍କର ଛାନ୍ଦମାଳା, ପ୍ରବନ୍ଧ ମାଳା ଓ କବିତାବଳୀ ବାଲ୍ୟକାଳରୁ ଅଭ୍ୟାସ କରି ଶିକ୍ଷିତ ହୋଇଅଛି । ଯେତେ ଅନୁପଯୁକ୍ତ ହେଲେ ହେଁ ତାଙ୍କରି ଧର୍ମୋପଦେଶରେ ଉପଦିଷ୍ଟ ।'' (ପୃଷ୍ଠା ୧୧୧୭) ଉଭୟଙ୍କ ଜୀବନର ଆଭିମୁଖ୍ୟରେ ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । କବି ମଧୁସୂଦନ ଯେପରି କହିଛନ୍ତି -

ମାତୃଭୂମି ମାତୃଭାଷା ଉଭୟେ ଜନନୀ
ସେବି ତାଙ୍କୁ ଭକ୍ତିଭରେ ଦିବସ ରଜନୀ
ଏମାନବ ଜନ୍ମ ହେଉ ସଫଳ ମୋହର
ଏ ଭିକ୍ଷା କରଇ୍ଛୁ ପୂର୍ଣ୍ଣ ପ୍ରଭୁ ମହେଶ୍ୱର ।

କବି ନନ୍ଦ କିଶୋର ସେହିପରି ପ୍ରକାଶ କରିଛନ୍ତି -

ହେଉ ଯା ହେବାର ପ୍ରେୟସୀ, ନ ଛାଡ଼ିବି ତୋ କର
ଧର୍ମ ଅର୍ଥ କାମ ମୋକ୍ଷ ତୁ ଚତୁର୍ବର୍ଗ ମୋହର ।
x x x x x x x

ତୋହରି ପାଇଁ ମୁଁ ସୁନ୍ଦରୀ ଜନ୍ମିଅଛି ମହୀରେ
ତବ ପୂତ ପୀଠେ ଡାକିଣ ବାନ୍ଧ ମୁକୁଟ ଶିରେ ।
x x x x x x x

ବିଜୟ ମୁକୁଟ ମୋ ଶିରେ ବାନ୍ଧି ଦିଅ ଗୋ ଦେବୀ
ଧନ୍ୟ ହେଉ ମମ ଜୀବନ ତବ ଚରଣ ସେବି ।

-- କବିତା ପ୍ରତି କବି ।

'ପୁଷ୍ପ' କବିତା ରଚିତ ହେବା ପୂର୍ବରୁ କବି ମଧୁସୂଦନଙ୍କ 'ଆକାଶ ପ୍ରତି' (୧୮୮୫), 'ପଦ୍ମ' (୧୮୯୬) ପ୍ରଭୃତି ସଂବୋଧ ଗୀତି ରଚିତ ତଥା ପ୍ରକାଶିତ ହୋଇ ସାରିଥିଲା ।

ମଧୁସୂଦନଙ୍କ କବିତାର ଆଧ୍ୟାତ୍ମିକ ଚେତନା, ରଚନା ଶୈଳୀ, ଏପରି କି ଭାଷା ବିନ୍ୟାସରେ ନନ୍ଦକିଶୋର ଅନୁପ୍ରାଣିତ ହୋଇଛନ୍ତି । ଅନୁରୂପ ଭାବରେ, ନନ୍ଦକିଶୋରଙ୍କ 'କର୍ମ' ପ୍ରବନ୍ଧରେ ମଧୁସୂଦନଙ୍କ ପ୍ରବନ୍ଧ ରଚନା ଶୈଳୀର ପ୍ରଭାବ ସ୍ପଷ୍ଟ ଲକ୍ଷ୍ୟ କରାଯାଇ ପାରେ । ମାର୍ଜିତ ପରିଚ୍ଛନ୍ନ ଗଦ୍ୟରୀତି, ସନ୍ଧିସମାସଯୁକ୍ତ ତତ୍‌ସମ ଶବ୍ଦବହୁଳ ଭାଷାବିନ୍ୟାସ କ୍ଷେତ୍ରରେ ନନ୍ଦକିଶୋର କିପରି ମଧୁସୂଦନଙ୍କ ଦ୍ୱାରା ପ୍ରଭାବିତ, ତାହା ନିମ୍ନ ଉଦାହରଣରୁ ଜଣା ପଡିବ -

''ଯେତେ ବେଳେ ବିଶ୍ୱ ସଂସାରରେ ସମସ୍ତେ ସ୍ୱସ୍ୱ କର୍ମରେ ନିଯୁକ୍ତ, ସେତେବେଳେ ସୃଷ୍ଟିର ଶ୍ରେଷ୍ଠ ଜୀବ ମାନବ ପକ୍ଷରେ କ୍ରିୟାହୀନତା ଅସମ୍ଭବ । କାରଣ ମନୁଷ୍ୟର ଅଭାବ ସର୍ବାଧିକ, ତାହା ଅତି ଗୁରୁତର ଏବଂ ସୁବିଧା ଅତି ଅଳ୍ପ । ପଶୁପକ୍ଷ୍ୟାଦି ପ୍ରକୃତି ଠାରୁ ଅନେକ ସୁବିଧା ପ୍ରାପ୍ତ ହୁଅନ୍ତି । ସେମାନଙ୍କୁ ଖାଦ୍ୟ ଆହରଣ, ରନ୍ଧନ, ବସ୍ତ୍ର ବୟନ, ଗୃହ ନିର୍ମାଣ ଆଦି ଅନେକ କାର୍ଯ୍ୟ କରିବାକୁ ହୁଏ ନାହିଁ ଯାହା କି ମନୁଷ୍ୟ ପକ୍ଷରେ ଅତି ପ୍ରୟୋଜନୀୟ ।'' (କର୍ମ- ନନ୍ଦକିଶୋର)

''କୌଣସି କାର୍ଯ୍ୟରେ ସିଦ୍ଧି ଲାଭ କରିବା ପାଇଁ ପୁନଃ ପୁନଃ ଯେଉଁ ଦୃଢ ଚେଷ୍ଟା କରାଯାଏ, ତାହାକୁ ଅଧ୍ୟବସାୟ କହନ୍ତି ଏବଂ ଅନ୍ୟମନସ୍କ ନ ହୋଇ କୌଣସି କାର୍ଯ୍ୟରେ ଯେଉଁ ଅଭିନିବେଶ ବା ମନୋଯୋଗ ଦିଆଯାଏ, ତାହାକୁ ଏକାଗ୍ରତା କହନ୍ତି । ଅଧ୍ୟବସାୟ ବା ଏକାଗ୍ରତା ବିନା କି ଶିଳ୍ପ, ବାଣିଜ୍ୟ, କି ବିଦ୍ୟୋପାର୍ଜନ କୌଣସି କାର୍ଯ୍ୟ ସାଧିତ ହୋଇ ନ ପାରେ ।'' (ଅଧ୍ୟବସାୟ - ମଧୁସୂଦନ)

ଏପରି କି, ପଲ୍ଲୀ ବିଷୟକ କବିତା ରଚନାରେ ନନ୍ଦକିଶୋର, ମଧୁସୂଦନଙ୍କ କେତେକ କବିତା ଦ୍ୱାରା ଅନୁପ୍ରେରିତ ହୋଇଥିବାର ମନେହୁଏ । ମଧୁସୂଦନଙ୍କର

ଛାଡି ବନ୍ଧୁ ନଗର ଚହଳ
ଯିବା ଚ୍ଳଲ ଯେଉଁ ସ୍ଥାନେ ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ସୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।

ବନ୍ଧୁ ଏହି ଶରତ ସମୟ
ଗ୍ରାମରେ ବୁଲିବା ଆଜି, ଦେଖିବା କେମନ୍ତେ ସାଜି
ପ୍ରକୃତି ସୁନ୍ଦରୀ ହରେ ଭାବୁକ ହୃଦୟ
କରିବା ବିବିଧ ଗନ୍ଧେ ଚିତ୍ତ ବିନିମୟ

- କବିତାବଳୀ (ଶରତ୍ ପ୍ରଭାତ) (୧୮୭୩-୭୪)

ଏହି କବିତାର ପଲ୍ଲୀମୁଖୀନତା ନନ୍ଦକିଶୋରଙ୍କୁ ନିଜର ' ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଜା' (୧୮୯୮)- ପରେ 'ନିର୍ଝରିଣୀ' ରେ ପରିବର୍ତ୍ତିତ ହୋଇ 'ନବବର୍ଷାଭାବନା' ରୂପେ ସ୍ଥାନିତ - କବିତା ରଚନା ପାଇଁ ପ୍ରେରଣା ଯୋଗାଇଥିବା ଅନୁମିତ ହୁଏ ।

ନନ୍ଦକିଶୋର କ୍ରାନ୍ତଗୁରୁ । ମଧୁସୂଦନଙ୍କ ପ୍ରଭାବ ଓ ପ୍ରେରଣା ସେ ସାହିତ୍ୟ ସାଧନାର ଉଦ୍‌ଯୋଗ ପର୍ବରେ ଲାଭ କରିଛନ୍ତି ସତ୍ୟ, କିନ୍ତୁ ପ୍ରବନ୍ଧ ବା ପଲ୍ଲୀବିଷୟକ କବିତା ରଚନାରେ ସେ ତାଙ୍କୁ ଅଚିରେ ଅତିକ୍ରମ କରି ଯାଇଛନ୍ତି । ମଧୁସୂଦନ ଥିଲେ ମୁଖ୍ୟତଃ ନଗରବାସୀ, ସେଥିପାଇଁ ନଗର ଚହଳ ଛାଡି ଗ୍ରାମରେ ବୁଲିବା ପାଇଁ ସେ ଆଗ୍ରହ ପ୍ରକାଶ କରିଛନ୍ତି । କିନ୍ତୁ ନନ୍ଦକିଶୋର ମୁଖ୍ୟତଃ ପଲ୍ଲୀବାସୀ । ଛାତ୍ରଜୀବନର ବେଶୀ ଭାଗ କଟିଛି ଗ୍ରାମରେ । କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁରରେ କିଛି କାଳ କର୍ମଜୀବନ କଟାଇଥିଲେ ହେଁ, ଅଧିକାଂଶ ସମୟ ସେ ଗ୍ରାମ୍ୟ ପରିବେଶରେ ବଞ୍ଚିଛନ୍ତି- କର୍ମଜୀବନରେ ସହରରେ ଥିଲାବେଳେ ମଧ୍ୟ ପଲ୍ଲୀକୁ ଝୁରି ହେଉଛନ୍ତି । ତେଣୁ ତାଙ୍କର ପଲ୍ଲୀମୁଖୀନତା ମଧୁସୂଦନଙ୍କ ପଲ୍ଲୀମୁଖୀନତାଠାରୁ ବିଶ୍ୱସ୍ତତର - ପଲ୍ଲୀ ପ୍ରାଣତା ଗଭୀରତର ।

**ବିଦଗ୍ଧ ଆଙ୍ଗିକରେ ପଲ୍ଲୀକବିତା**

ପଲ୍ଲୀବିଷୟକ କବିତା ରଚନାରେ ନନ୍ଦକିଶୋର ଥିଲେ ଧୁରୀଣ । ଆଧୁନିକ ଓଡିଆ କାବ୍ୟ ସାହିତ୍ୟର ଆତ୍ମିକ କ୍ଷେତ୍ରରେ ସେ ଏହି ନୂତନ ଧାରାର ପ୍ରବର୍ତ୍ତକ କରିଥିବାର ବୋଲାଯାଇପାରେ । ସେ ପୂର୍ଣ୍ଣାଙ୍ଗ କାବ୍ୟର କବି ନୁହନ୍ତି, ମୁଖ୍ୟତଃ ଖଣ୍ଡକବିତା ବା ଗୀତି କବିତାର କବି । ସୀତା ବନବାସ (୧୯୦୧), କୃଷ୍ଣ କୁମାରୀ (୧୯୦୧) ଓ ଶର୍ମିଷ୍ଠା (୧୯୦୮) - ସେ ଏହି ତିନିଗୋଟି ପୂର୍ଣ୍ଣାଙ୍ଗ କଥାକାବ୍ୟ ରଚନା କରିଥିଲେ ହେଁ, ତାଙ୍କ କବିତ୍ୱର ବୈଶିଷ୍ଟ୍ୟ ତଥା କୃତିତ୍ୱ ଏହି କାବ୍ୟତ୍ରୟୀରେ ପ୍ରକଟିତ ହୋଇପାରିନାହିଁ । ବହୁ ସଂଖ୍ୟକ ଖଣ୍ଡକବିତା - ବିଶେଷତଃ ପଲ୍ଲୀବିଷୟକ କବିତାରେ ତାହା ସୁପ୍ରକଟ । ତିନି ଭାଗରେ ପ୍ରକାଶିତ 'ପଲ୍ଲୀଚିତ୍ର' (ପ୍ରଥମଭାଗ ୧୯୦୦ ମସୀହାରେ, ଦ୍ୱିତୀୟ ଭାଗ ୧୯୦୯ ମସୀହାରେ ଏବଂ ତୃତୀୟ ଭାଗ କବିଙ୍କ ପରଲୋକ ପ୍ରାପ୍ତି ପରେ), 'ନିର୍ଝରିଣୀ' (୧୯୦୦) - (କାକ ବାରତା, ଡାଆଣିଆ ଖରା ପ୍ରଭୃତି କବିତା), 'ତରଙ୍ଗିଣୀ' (୧୯୨୬) - (ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ କବିତା) ଇତ୍ୟାଦି କାବ୍ୟ ସଂଚୟନସ୍ଥ କବିତାବଳୀ ଏହାର ପ୍ରମାଣ । କବିଙ୍କର 'ନାନାବାୟା ଗୀତ' (୧୯୧୫) ଶିଶୁ ରଚନା ହେଲେ ହେଁ ଏଥିରୁ ମଧ୍ୟ ପଲ୍ଲୀକବିତାର ସ୍ୱାଦ ମିଳିଥାଏ ।

ଏହି ପଲ୍ଲୀ ବିଷୟକ କବିତା ଗୁଡ଼ିକ ମଧ୍ୟରୁ ଅଧିକାଂଶ କିନ୍ତୁ ବିଦଗ୍ଧ ଆଙ୍ଗିକରେ ରଚିତ, ଏଥିରେ ଗ୍ରାମୀଣ ଭାଷା ଓ ଶୈଳୀ କ୍ୱଚିତ୍ ପ୍ରୟୋଗ କରାଯାଇଛି । ପଲ୍ଲୀ ଜୀବନ ଓ ସମାଜର ଚିତ୍ର କବି ନନ୍ଦକିଶୋର ଗୁରୁ ଗମ୍ଭୀର ଶୈଳୀ ଓ ଶୁଦ୍ଧ ମାର୍ଜିତ ଭାଷାରେ ପରିବେଷଣ କରିବାକୁ ପସନ୍ଦ କରିଛନ୍ତି । ବିଶେଷତଃ 'ପଲ୍ଲୀଚିତ୍ର'ର ତିନିଟିଯାକ ଭାଗରେ ଥିବା କବିତା ଗୁଡ଼ିକରେ ଉକ୍ତ ବିଦଗ୍ଧ ଆଙ୍ଗିକ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ -

ଗ୍ରାମେ କାହିଁ ବସି କାକଗଣ
ଘନ ଘନ କରନ୍ତି ନିସ୍ୱନ
ଆନନ ବଙ୍କିମ କରି          ଗୃହୁଁଛନ୍ତି ଡରି ଡରି
ଏ ଗୃହାଣି ଭଙ୍ଗି ତାଙ୍କୁ କିଏ ଶିଖାଇଲା
କି ଗୂଢ଼ ଉଦ୍ଦେଶ୍ୟ ବିହି ଏହା ଭିଆଇଲା ?

"ଆରେ କାକ, ଆସ ଆସ ଆସ
ପିତା ଭ୍ରାତା କରନ୍ତି ପ୍ରବାସ
ବସି ଏ ତଣ୍ଡୁ ଭାଗେ          ଖାଇକାକ, ଅନୁରାଗେ
କେ ବାହୁଡ଼େ ବିଦେଶରୁ କହି ଉଡ଼ିଯାଅ।
ବୃଥା ପୁଣି କାହିଁ ପାଇଁ ରାବୁ କାଆ କାଆ ?"

x x x x x x x

ନାନାଗୀତ ଗାଇ ଗ୍ରାମତାଳେ
ବାଇ ବଂଶୀ ଗ୍ରାମର ଗୋପାଳେ
ଗ୍ରାମ ପ୍ରାନ୍ତେ ଗୋରୁ ଛାଡ଼ି          ତରୁତଳେ ଧରି ବାଡ଼ି
କୁହାଟିଣ ଆନନ୍ଦରେ ଚରାନ୍ତି ଗୋଧନ
ପକ୍ଷଯୁକ୍ତ ତାଳଛତ୍ର ଦିଶେ ଶୋଭାବନ

- ପଲ୍ଲୀବାସୀ (ପଲ୍ଲୀଚିତ୍ର ୧ମ ଭାଗ)

ସେହିପରି ଅନ୍ୟତ୍ର -

ଅସାବଧାନରେ କେହି ଯେବେ ଗାଭୀ,
ମାର୍ଜାର ମାରଇ ଗ୍ରାମେ
ଲୁଣ୍ଠନ୍ତି ବ୍ରାହ୍ମଣେ ରଙ୍କ ଗଣ୍ଠିଧନ
ପାପ - ପ୍ରାୟଶ୍ଚିତ୍ତ ନାମେ ।
ପ୍ରାୟଶ୍ଚିତ୍ତକାରୀ ବ୍ରାହ୍ମଣେ ପୁଛଇ
କହ ଦେଇ ବକ୍ଷେ ହସ୍ତ
ତୁମ୍ଭେକି କଦାପି କରିନାହଁ ପାପ
ପୂର୍ଣ୍ଣ-ପୁଣ୍ୟ ସତ୍ୟବ୍ରତ ?
ଅଜ୍ଞାତରେ ଯେବେ ଦୀନ ଗ୍ରାମବାସୀ
କରି ପକାଇଲା ଭ୍ରାନ୍ତି
ଅନୁତପ୍ତ ପ୍ରାଣ-ସଢେ କିମ୍ପା କ୍ଷାର
ଦିଅ, ଏ କି ମହାଭ୍ରାନ୍ତି !
ପାପ ଜ୍ଞାନ କୃତ, ତାର ପ୍ରାୟଶ୍ଚିତ୍ତ
ନିଷ୍କପଟ ଅନୁତାପ
ତଣ୍ଡୁଳ ତେଜିଣ ଚଷ୍ମୁ ଘେନି ବ୍ୟସ୍ତ
ଏକି ଦେବ - ଅଭିଶାପ ?

- ପଲ୍ଲୀର କୁସଂସ୍କାର (ପଲ୍ଲୀଚିତ୍ର ୩ୟ ଭାଗ)

‘‘ନାନାବାୟା ଗୀତ’ର କବିତା ଗୁଡ଼ିକରେ କିନ୍ତୁ ଏହାର ବ୍ୟତିକ୍ରମ ଆଖିରେ ପଡ଼େ । ଏଥିରେ ସାଧାରଣତଃ ବିଦଗ୍ଧ ଆଙ୍ଗିକ ଅନୁସୃତ ହୋଇ ନାହିଁ । ଶିଶୁମାନଙ୍କ ପାଇଁ ଏହି କବିତାଗୁଡ଼ିକ ରଚିତ ହୋଇଥିବାରୁ କବି ନନ୍ଦକିଶୋର ଏଥିରେ ସାବଲୀଳ ଲୌକିକ ଶୈଳୀ ଓ ସରଳ ଗ୍ରାମୀଣ ଭାଷା ପ୍ରୟୋଗ କରିଛନ୍ତି । ଏପରିକି, ସ୍ଥଳ - ବିଶେଷରେ ସେ ଲୋକଛନ୍ଦ ପ୍ରୟୋଗ ପୂର୍ବକ କବିତା ଗୁଡ଼ିକର ପଲ୍ଲୀପ୍ରାଣତା ବଳିଷ୍ଠ କରି ପାରିଛନ୍ତି । ଉଦାହରଣ ସ୍ୱରୂପ -

ଗୁଲୁଣି ଚଲଉଁ ଚଲଉଁ ପାଇଲଇଁ ମୁଁ ଗୋଡ଼ି
କି ସୁନ୍ଦର ପାରା ଯୋଡିକ ଯାଉଅଛନ୍ତି ଉଡ଼ି ।
ଆସ ଆସ ପାରା ଯୋଡିକ ମୋର ପିଣ୍ଡାରେ ବସ
ଖାଇବାକୁ ଦେବି ତୁମକୁ ମୁହିଁ ନଡିଆ ରସ ।

ପିଇବାକୁ ଦେବି ତୁମକୁ ବେଣ୍ଟ ପୋଖରୀ ପାଣି
ଶୋଇବାକୁ ଦେବି ଖଟୁଲି ମାଳୀଘରୁ ମୁଁ ଆଣି ।
ମାଳୀଘର ଖଟୁଲିରେ ଯେ ବାଉଁଶର ପାଟିଆ
ରଜାଘର ଝିଅ ଗୋଡ଼ରେ ରତନର ଝୁଣ୍ଟିଆ ।
ରତନ ଝୁଣ୍ଟିଆ ମଝିରେ ଥିଲା ମାଣିକ୍ୟ ମରି
ଖସିଗଲା ଝୁଣ୍ଟିଆରୁ ସେ ଖୁଣ୍ଟି ନେଲା ତା ଶାରୀ ।
ଶାରୀ ପଚ୍ଚାରିଲା ଶୁଆଲୋ କେଉଁ ବାଟରେ ଯିବା
ଶୁଆ ବୋଲେ ଶାରୀ ଚ୍ଚାଲ ମୋ ସ୍ୱର୍ଗଦାଣ୍ଡରେ ଯିବା ।
ସ୍ୱର୍ଗ ଦାଣ୍ଡେ ଯାଉଁ ଯାଉଁ ମୁଁ ପାଏଁ ଗୋବର ଲଣ୍ଡି
ଲିପି ପୋଛି ଦେଇ ଯାଅ ମା ପୂଜୁଁ ମଙ୍ଗଳଚଣ୍ଡୀ ।

- ପାରାଯୋଡିକ (ନାନାବାୟା ଗୀତ ୧ମ ଭାଗ)

ସେହିପରି ଅନ୍ୟତ୍ର -

ଶେଯେ ଶୋଇ ହସୁଥାଏ ଏ ଟୋକାଟି କିଏ ରେ
କଜଳପାତି କହି ଯାଇଛି ମୁଣ୍ଡରେ ଲୁଗା ଦେ'ରେ ।
ଠୁକୁରୁ ଠୁକୁରୁ ଚ୍ଚାଲୁଥାଏ ନାଥୁ ନାଥୁ ପଡ଼ି
କିଛି ଦିନେ ସାହି ଦାଣ୍ଡେ ଦଉଡ଼େ ଗିଡ଼ି ଗିଡ଼ି ।
''ଆ-ଆରେ ଜହ୍ନମାମୁ'' ଡାକେ ହାତ ଠାରି
''ଖାଇବୁ ମୋର ସଙ୍ଗେ ଡାଲି, ଭାତ, ତରକାରୀ ।''
ନାନା ଜାତି ଫୁଲ ତୋଳି ପଚ୍ଚାରେ କେ କି ବନ
ଚିହ୍ନେ ନାନା ଜାତି ପକ୍ଷୀ ଶୁଣି ତାଙ୍କ ସ୍ୱନ ।
ରାତିରେ ତାରା ଚିହ୍ନୁଥାଏ ଏ ଟୋକାଟି କିଏରେ
କଜଳପାତି କହି ଯାଇଛି ମୁଣ୍ଡରେ ଲୁଗା ଦେ' ରେ ।

- ଏ ଟୋକାଟି କିଏ ରେ (ନାନାବାୟା ଗୀତ ୨ୟ ଭାଗ)

ବିଭିନ୍ନ ଲୋକୋକ୍ତି ବା ଲୋକ ଗୀତର ବହୁଳ ପ୍ରସାରିତ ପଙ୍‌କ୍ତି ପ୍ରୟୋଗରେ ନୂତନ ବା ଆଧୁନିକ ଭାବ, ବିଷୟ ବସ୍ତୁ ପରିବେଷଣ ନନ୍ଦକିଶୋରଙ୍କ କବିତା - ରଚନା ଶୈଳୀର ଏକ ଅନନ୍ୟ ସାଧାରଣ ବିଶେଷତ୍ୱ, ଯାହା ପରବର୍ତ୍ତୀ କାଳରେ କବି ଗୋଦାବରୀଶ ମହାପାତ୍ର, କବି କୁଞ୍ଜ ବିହାରୀ ଦାଶ ପ୍ରମୁଖଙ୍କ ଦ୍ୱାରା ଅନୁସୃତ ହୋଇଥିବାର ଦେଖାଯାଏ । 'ଉଡିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ କେଶ' ଲୋକଗୀତ

- ପଙ୍‌କ୍ତି ପ୍ରୟୋଗ କରି ନନ୍ଦକିଶୋର ଜଣେ ସମାଜଚ୍ୟୁତା କଳଙ୍କିନୀ ନାରୀର ଦୁଃଖ ଓ ମର୍ମବେଦନା ଜୀବନ୍ତ ଭାବରେ ପ୍ରକାଶ କରି ପାରିଛନ୍ତି ('ତରଙ୍ଗିଣୀ'ସ୍ଥ 'କଳଙ୍କିନୀ' କବିତା)। ସେହିପରି 'ତରଙ୍ଗିଣୀ'ସ୍ଥ 'ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ' କବିତାରେ ''ଚମ୍ପାଫୁଲଟିଏ ପାଇଲି ବନ ହଳଦୀ ପ୍ରାୟେ'' ପଙ୍‌କ୍ତି ଏବଂ ''ନାନାବାୟା ଗୀତ'ସ୍ଥ ''ପାରାପୋଡ଼ିକ' କବିତାରେ ''ଗୁଲୁଣି ଚଲଉଁ ଚଲଉଁ ପାଇଲି ମୁ ଗୋଡ଼ି, କି ସୁନ୍ଦର ପାରାପୋଡ଼ିକ ଯାଉଅଛନ୍ତି ଉଡ଼ି'' ପଙ୍‌କ୍ତି ପ୍ରୟୋଗରେ ସେ ଦୁଇଟି ଚମତ୍କାର ରୋମାଣ୍ଟିକ୍ ଉପାଖ୍ୟାନ ଅତ୍ୟନ୍ତ ପ୍ରଭାବଶାଳୀ ଭଙ୍ଗୀରେ ଉପସ୍ଥାପନ କରିଛନ୍ତି।

ପଲ୍ଲୀ-ବିଷୟକ କବିତା ରଚନାରେ କବି ନନ୍ଦକିଶୋର ପାଶ୍ଚାତ୍ୟ ସାହିତ୍ୟର ଆର୍କାଡ଼ିଆନ୍ ବା ପେଷ୍ଟାରାଲ କବିତାରୁ ପ୍ରେରଣା ପାଇଥିବାର ମନେହୁଏ। ପେଷ୍ଟାରାଲ୍ କବିତାରେ ସାଧାରଣତଃ ଗ୍ରାମାଞ୍ଚଳର ଶାନ୍ତ ସୁନ୍ଦର ପରିବେଶ, ଗ୍ରାମ୍ୟ ଜୀବନର ସରଳତା, ପଶୁ ପାଳକମାନଙ୍କର (ବିଶେଷତଃ ମେଷ ପାଳକ) ସୁଖ ଦୁଃଖମୟ ଜୀବନାଲେଖ୍ୟ ପ୍ରଭୃତି ପରିବେଷିତ ହୋଇଥାଏ। ଇଉରୋପୀୟ ସାହିତ୍ୟରେ ପାଷ୍ଟୋରାଲ, କବିତା, ନାଟକ, ଉପନ୍ୟାସ ଆଦି ରଚନାରେ ଏକ ଦୀର୍ଘ ପରମ୍ପରା ରହିଛି। ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ଗ୍ରୀକ୍ କବି ଥିଓକ୍ରିଟସ୍‌ଙ୍କ ଠାରୁ ଆରମ୍ଭ କରି ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ଲାଟିନ୍ କବି ଭର୍ଜିଲ୍ ଓ ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀର ଇଂରାଜୀ ସାହିତ୍ୟ ସ୍ରଷ୍ଟା ଫିଲିପ୍ ସିଡନିଙ୍କ ମଧ୍ୟଦେଇ ଗତ ଊନବିଂଶ ଶତାବ୍ଦୀର ଇଂରାଜୀ ଲେଖିକା ମେରି ଗ୍ଲାଡିସ୍ ୱେବ୍‌ଙ୍କ ପର୍ଯ୍ୟନ୍ତ ବହୁ ସାହିତ୍ୟ ସ୍ରଷ୍ଟା ଏହି ଧରଣର ରଚନାରେ କୃତିତ୍ୱ ଅର୍ଜନ କରିଛନ୍ତି। କବି ନନ୍ଦକିଶୋର ଭଲ ଭାବରେ ଇଂରେଜୀ ସାହିତ୍ୟ ଅଧ୍ୟୟନ କରିଥିବାରୁ ଉକ୍ତ ପେଷ୍ଟୋରାଲ ରଚନାବଳୀ ଦ୍ୱାରା ଅନୁପ୍ରାଣିତ ହୋଇଥିବାର ସମ୍ଭାବନା ରହିଛି। ଲଳିତ ଗିରି-ଉଦୟଗିରି - ପରିବେଷ୍ଟିତ ବିରୂପା - ସେବିତ ମାଳ ଅଞ୍ଚଳର କବି ଥିଲେ ସେ, ମୁଖ୍ୟତଃ ସେହି ଅଞ୍ଚଳର ଗ୍ରାମୀଣ ଜୀବନ ଓ ସମାଜର ଚିତ୍ର ସେ ପରିବେଷଣ କରିଛନ୍ତି - ଗ୍ରାମ ଖେଳା, ଉତ୍କଳ କୃଷକ, ଏକାଟିଆ ଚଷା ଗୀତ, ବିରୂପା ତଟେ ପ୍ରଭୃତି ନିଜର ବିଭିନ୍ନ କବିତାରେ। ଶେଷୋକ୍ତ କବିତାଟିରେ ସେ ଉଲ୍ଲେଖ କରିଛନ୍ତି -

ତୋ ଗୁରୁ ପୁଳିନେ ନିମ୍ନଗା ଶୋଭେ ଅସଂଖ୍ୟ ଗ୍ରାମ
ଉଭା ନୈସର୍ଗିକ ଶୋଭାରେ ତୀର ଦକ୍ଷିଣ ବାମ।

x x x x x x x

ବିରୂପା ପଠାରେ ଗୋପାଳେ ରଖି ମେଷ ଗୋଧନ
ରଖୁଆଳ ଗୀତ ହରଷେ କରୁଥାନ୍ତି ଗାୟନ ।

x x x x x x x

ଏହି ଯେ ବିରୂପା ଯା' ତଟେ ମୋର ବାଲ୍ୟ-କୁଟୀର
ଯା' ତୀରେ କାନନ ପର୍ବତ ଦିଶୁଥିଲା ରୁଚିର ।
ମନେ ପଡ଼େ ଦେଖୁଥିଲଇଁ ବାଲ୍ୟେ ନିସର୍ଗ ଶିରୀ
ଅସିଆ, ଅଳତି, ଉଦୟଗିରି, ଲଳିତ ଗିରି
ସେ ଜଟିଆକୁଦ, ଛତର ତୋଟା, ହାଡୁଆପାଳ
ଯା' ଦର୍ଶନେ ଫେରି ଆସଇ ପ୍ରିୟ ଶୈଶବ କାଳ ।

x x x x x x x

ତାଳଗଣ୍ଡ ପୋତା ପୋଖରୀ ବିଲ ତୋଟା ପଡିଆ
ମାଣ୍ଡୁକା ପାହାଡ଼, ଅଲମଗିରି ସଙ୍ଗେ ଅସିଆ
ଲଳିତ ଗିରିରେ ଚନ୍ଦନ, ଗୁମ୍ଫା ଉଦୟଗିରି
ଷୋଳପୁଅ ମାଆ ପର୍ବତ ବାମ୍ଫୀ ତୋ ତୀରଶିରୀ ।

ନନ୍ଦକିଶୋର ପ୍ରକୃତରେ 'ପଲ୍ଲୀକବି' କି ? ତାଙ୍କୁ କେତେଦୂର ଠିକ୍ ଏହି 'ପଲ୍ଲୀକବି' ଅଭିଧାରେ ଚିହ୍ନିତ କରାଯାଇ ପାରେ ? ସୁଲେଖକ ଜ୍ଞାନୀନ୍ଦ୍ର ବର୍ମା କେତେ ବର୍ଷ ତଳେ ଏହି ପ୍ରଶ୍ନ ଉଠାଇଥିଲେ । ବାସ୍ତବିକ୍, ଆପଣା ଗଳ୍ପ - ଉପନ୍ୟାସରେ ଫକୀରମୋହନ ଆମର ପଲ୍ଲୀଜୀବନ ରୂପାୟିତ କରି 'ପଲ୍ଲୀ - କଥାକାର' ରୂପେ କେବେ ଆଖ୍ୟାତ ହୋଇ ନାହାନ୍ତି । ତାହା ହେଲେ, ନନ୍ଦକିଶୋର 'ପଲ୍ଲିକବୀ' ଭାବରେ ଅଭିହିତ ହେବେ କାହିଁକି ? କଥାଟି ଯୁକ୍ତିଯୁକ୍ତ ମନେହୁଏ । ଆମର ଆଧୁନିକ କାବ୍ୟ ସାହିତ୍ୟରେ କବି ନନ୍ଦକିଶୋର ସର୍ବପ୍ରଥମେ ପଲ୍ଲୀ ବିଷୟକ କବିତା ରଚନା କରି ନଥିଲେ । ଏ କ୍ଷେତ୍ରରେ କବି ଜୟକୃଷ୍ଣ ମହାପାତ୍ରଙ୍କ 'ପଲ୍ଲୀଗ୍ରାମର ଶୋଭା' (୧୮୯୨), ପୂର୍ବ ସୂଚିତ କବି ମଧୁସୂଦନ ରାଓଙ୍କର 'ଶରତ୍ ପ୍ରଭାତ' ପ୍ରଭୃତି କବିତା ପଥିକୃତ୍ ସୃଷ୍ଟି । ଆପଣମାନଙ୍କର ଅବଗତି ନିମିତ୍ତ 'ଉତ୍କଳ ପ୍ରଭା'ର ଦ୍ୱିତୀୟ ବର୍ଷ ଦ୍ୱିତୀୟ ସଂଖ୍ୟାରେ ପ୍ରକାଶିତ 'ପଲ୍ଲୀଗ୍ରାମର ଶୋଭା' କବିତାରୁ କିୟଦଂଶ ଏଠାରେ ଉଦ୍ଧାର କରାଯାଉଛି -

ଆସ ଆସ ଭାଇମାନେ ବୁଲିବାକୁ ଯିବା
ପଲ୍ଲୀଗ୍ରାମ ଶୋଭା ଦେଖି ଆନନ୍ଦ ହୋଇବା ।

ନୁହଁଇ ନଗର ଶୋଭା ତୁଳନା ତା'ଠାରେ
କେତେ କ୍ଷଣ ମନ ଭୁଲେ କୃତ୍ରିମ ଶୋଭାରେ ! ୧
ସ୍ୱାଭାବିକ ଶୋଭା ଦେଖ କେତେ ମନୋହର
ଯେଉଁଠାରେ ରହିଛନ୍ତି କୃଷକ ନିକର ।
ପ୍ରକୃତିର ଶୋଭା ଆଗେ କୃତ୍ରିମ ପଛରେ
ଅସଲକୁ ଛାଡ଼ି କିଏ ନକଲେ ଆଦରେ ! ୨
x x x x x x x
ଗ୍ରିଆଡ଼େ ଶସ୍ୟକ୍ଷେତ୍ର ଶ୍ୟାମଳ ସୁନ୍ଦର
ପୂର୍ଣ୍ଣ ହୋଇ ରହିଅଛି ନାନାଦି ଶସ୍ୟର ।
ବରଷକ ପରିଶ୍ରମ ଫଳ ସେ ଅଟଇ
ଯାହା ପାଇଁ କୃଷକଟି ଆନନ୍ଦ ହୁଅଇ । ୧୦
ଗୋଧନ ଗୋଶାଳ ପୂର୍ଣ୍ଣ ହୋଇ ରହିଛନ୍ତି
କୃଷକେ ଆନନ୍ଦେ ତାଙ୍କୁ ପାଳନ କରନ୍ତି ।
ପଡିଆରେ ସେହିମାନେ ଚରିବୁଲି ଆସି
ଲୋଟା ଲୋଟା ଦୁଧ ଦ୍ୟନ୍ତି ଖୁସି ତହି ଗ୍ରୁଷୀ । ୧୧
କୃଷକମାନଙ୍କ ସାନ ସାନ ପିଲାମାନେ
ନିଜ ନିଜ ଦାଣ୍ଡେ ଖେଳୁଛନ୍ତି ଖୁସି ମନେ ।
ବୃଦ୍ଧମାନେ ବସି ରହି ଅଛନ୍ତି ପିଣ୍ଡାରେ
କୃଷିକାର୍ଯ୍ୟ ଉପଦେଶ ଦିଅନ୍ତି ଯୁବାରେ । ୧୨
କୃଷକର ପତ୍ନୀମାନେ ନିଜ ନିଜ ଘରେ
ଗୃହକାର୍ଯ୍ୟ କରୁଛନ୍ତି ଉଲ୍ଲାସ ମନରେ ।
କୁଳ ବଧୂଗଣ ଘେନି କକ୍ଷରେ କଳସ
ଜଳ ଆଣୁଛନ୍ତି ଦେଖ ହୋଇଣ ହରଷ । ୧୩

ପୁଣି, ନନ୍ଦକିଶୋରଙ୍କର ପଲ୍ଲୀ-ବିଷୟକ କବିତାର ପରିମାଣ କେତେ ? ପଲ୍ଲୀକବିତା ଅପେକ୍ଷା ତାଙ୍କର ସାଧାରଣ କବିତା ରହିଛି ଅଧିକ, ପଲ୍ଲୀ କବିତା ଶତକରା ୩୦ ଭାଗ ହେଲେ, ସାଧାରଣ କବିତା ହେବ ୭୦ ଭାଗ । ଅବଶ୍ୟ, ତାଙ୍କର କୃତିତ୍ୱ ହେଉଛି - ପଲ୍ଲୀ - ବିଷୟର ଅତ୍ୟନ୍ତ ପ୍ରଭାବଶାଳୀ ଚିତ୍ରଣ । ପଲ୍ଲୀ ଜୀବନ ଓ ସମାଜର ଭିନ୍ନ ଭିନ୍ନ ଦିଗ ତଥା ବହୁମୁଖୀ ବିଭାବ କଳାମଣ୍ଡିତ କରି ପ୍ରକାଶ କରିବାରେ ନନ୍ଦକିଶୋର ତତ୍କାଳୀନ ସମସ୍ତ କବିଙ୍କୁ ଅତିକ୍ରମ କରି ଯାଇଛନ୍ତି । ତଥାପି ତାଙ୍କୁ

'ପଲ୍ଲୀକବି' ନ କହି ତିନିଗୋଟି କାବ୍ୟ ଓ ବହୁ ସଂଖ୍ୟକ ସାଧାରଣ କବିତାର ରଚୟିତା ଭାବରେ କେବଳ 'କବି' ବୋଲିବା ଯୁକ୍ତିଯୁକ୍ତ ହେବ ।

## ସ୍ୱଦେଶ ପ୍ରେମର ଶତଦଳ

କବି ନନ୍ଦକିଶୋରଙ୍କ ରଚନାବଳୀରେ ସ୍ୱଦେଶ ପ୍ରେମ ପ୍ରାୟ ସର୍ବତ୍ର ସୁପ୍ରକଟ । ତାଙ୍କ ସାହିତ୍ୟ ସୃଷ୍ଟିର ଶୋଣିତ ଧାରା ରୂପେ ଏହା ପ୍ରବାହିତ ହୋଇଥିବାର ଦେଖାଯାଏ । ତିନି ଭାଗରେ ରଚିତ 'ଜନ୍ମଭୂମି' (୧ମ ଭାଗ - ୧୯୦୩, ୨ୟ ଭାଗ - ୧୯୦୮ ଏବଂ ୩ୟ ଭାଗ - କବିଙ୍କ ପରଲୋକ ପରେ) ତ ତାଙ୍କ ସ୍ୱଦେଶ ପ୍ରେମର ପରାକାଷ୍ଠା ପ୍ରଦର୍ଶନ କରେ ! ତାହା ବ୍ୟତୀତ 'ବସନ୍ତ କୋକିଳ' (୧୯୦୨), 'ଗ୍ରୁଚିତ୍ର' (୧୯୦୨), 'ନିର୍ମାଲ୍ୟ' (୧୯୦୩) ଆଦି କାବ୍ୟ ସଂଚୟନର ବହୁ କବିତାରେ ଏହି ଭାବର ଦ୍ୟୋତନା ଦେଖାଯାଏ । ଏପରି କି, ତାଙ୍କର ପଲ୍ଲୀ ବିଷୟକ କବିତା ଗୁଡ଼ିକର ମୂଳ ପ୍ରେରଣା ଭାବେ ଏହି ସ୍ୱଦେଶ ପ୍ରେମକୁ ଉପସ୍ଥାପିତ କରାଯାଇ ପାରେ । ସେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ନାହିଁ, ସମଗ୍ର ଭାରତ ବର୍ଷ ପରାଧୀନତା - ପାଶରେ ଆବଦ୍ଧ । କିନ୍ତୁ ଦେଶ ଓ ଦଶର ସମୃଦ୍ଧି ପାଇଁ ଯେଉଁ ନବ ଚେତନା ପ୍ରକଟିତ ହୋଇଛି, କବି ନନ୍ଦକିଶୋର ତାହାର ଅନ୍ୟତମ ଧାରକ ଓ ବାହକ ରୂପେ ଦେଖା ଦେଇଛନ୍ତି । 'ଉତ୍କଳ ସମ୍ମିଳନୀ'ର ଆରମ୍ଭ (୧୯୦୩) କାଳରୁ ସେ ନିଜକୁ ତା' ସହିତ ସଂଶ୍ଳିଷ୍ଟ କରାଇଛନ୍ତି । ପରାଧୀନ ଦେଶର ବିଦେଶୀ ଶାସନ - ମୁଖ୍ୟଙ୍କ ନିକଟରେ ଉତ୍କଳ - ମାତାଙ୍କର ଛଅ ଗୋଟି ଗୁହାରି ସେ ଉପସ୍ଥାପନ କରିଛନ୍ତି - ସମସ୍ତ ଓଡ଼ିଆ ଭାଷୀ ଅଂଚଳର ଏକତ୍ରୀକରଣ, ଚିରସ୍ଥାୟୀ ବନ୍ଦୋବସ୍ତ, ଜଳସେଚନର ବ୍ୟବସ୍ଥା, ଲୁଣ ଉପରୁ ଟିକସ ଛାଡ଼, ଶାସନ କାର୍ଯ୍ୟରେ ଓଡ଼ିଆଙ୍କର ସ୍ଥାନିତ କରଣ ଓ ଓଡ଼ିଶାରେ କୃଷିବ୍ୟାଙ୍କ ପ୍ରତିଷ୍ଠା (ଜନ୍ମଭୂମି ୧ମ ଭାଗ) । ୧୯୦୩ ମସୀହାରେ ଜଣେ କବିଙ୍କର ଏ ସାଧୁ ଅଭିପ୍ସା କେତେ ପ୍ରୟୋଗୀୟ ଓ ଉପଯୋଗୀ, ତାହା ଆମ ପକ୍ଷରେ ହୃଦୟଙ୍ଗମ କରିବା କଷ୍ଟକର ନୁହେଁ । 'ଜନ୍ମଭୂମି'ର ୨ୟ ଓ ୩ୟ ଭାଗରେ ସ୍ଥାନିତ ବିଭିନ୍ନ କବିତାରେ କେତେକ ଜୀବୀତ ଉତ୍କଳୀୟ କୃତୀ ସନ୍ତାନଙ୍କର ଗୁଣାଗାନ ତଥା କେତେକ ପରଲୋକଗତ ମହାନ୍ ବ୍ୟକ୍ତିଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ମଧ୍ୟ କବି ନନ୍ଦକିଶୋରଙ୍କ ଗଭୀର ସ୍ୱଦେଶ ପ୍ରେମର ପରିଚ୍ୟକ ।

କବିଙ୍କର ଏହି ସ୍ୱଦେଶ ପ୍ରେମରେ କେହି କେହି ସଂକୀର୍ଣ୍ଣତାର ଗନ୍ଧ ବାରି ପାରନ୍ତି । ମନେ କରି ପାରନ୍ତି - କେବଳ ଓଡ଼ିଆ ଓ ଓଡ଼ିଶାକୁ ଘେନି ଯେପରି ତାଙ୍କର ଦେଶପ୍ରେମ ଆବର୍ତ୍ତିତ ହୋଇଛି ! କିନ୍ତୁ ନନ୍ଦକିଶୋର ମୂଳତଃ ସ୍ୱଦେଶ ପ୍ରେମୀ,

ଜାତୀୟତାବାଦ ତାଙ୍କର ସ୍ୱଦେଶ ପ୍ରେମର ଏକ ବିଭାବ ମାତ୍ର। ଏଠାରେ ଏହା ଉଲ୍ଲେଖନୀୟ ଯେ - ଜାତୀୟତାବାଦ ଓ ସ୍ୱଦେଶ ପ୍ରେମ ପରସ୍ପର - ବିରୋଧୀ ନୁହନ୍ତି। ଉତ୍କଳ-ପ୍ରୀତି, ଭାରତ-ପ୍ରୀତିର ପରିପୂରକ। ସେହିପରି ଭାରତ-ପ୍ରୀତି, ବିଶ୍ୱ ପ୍ରୀତିର ମୂଳଦୂଆ। ସେହି ସୁପରିଚିତ ଇଂରାଜୀ ଉକ୍ତି ଅନୁଯାୟୀ - ପରିବାର ମଧ୍ୟରୁ ହିଁ ବିଶ୍ୱପ୍ରୀତି ଆରମ୍ଭ ହୋଇଥାଏ। ସେଥିପାଇଁ ଆମେ ଦେଖୁଛୁଁ - ଯେଉଁ କାନ୍ତକବି ଲକ୍ଷ୍ମୀକାନ୍ତ 'ବନ୍ଦେ ଉତ୍କଳ ଜନନୀ' ଲେଖନ୍ତି, ସେ ମଧ୍ୟ 'ବନ୍ଦେ ଭାରତ ଜନନୀ' ଲେଖି ପାରନ୍ତି। ଯେଉଁ କବିଗୁରୁ ରବୀନ୍ଦ୍ର ନାଥ "ବାଂଲାର ଜଲ୍ ବାଂଲାର ଫଲ୍ ପୁଣ୍ୟ ହଉକ୍ ପୁଣ୍ୟ ହଉକ୍ ହେ ଭଗବାନ" ଲେଖନ୍ତି, ସେ ମଧ୍ୟ "ଜନଗଣମନ ଅଧିନାୟକ ଜୟହେ ଭାରତ ଭାଗ୍ୟ ବିଧାତା" ଲେଖି ପାରନ୍ତି। କବି ନନ୍ଦିକିଶୋରଙ୍କ କ୍ଷେତ୍ରରେ ଆମେ ମଧ୍ୟ ତାହାହିଁ ଲକ୍ଷ୍ୟ କରିବା। ଉନବିଂଶ ଶତାବ୍ଦି ଶେଷ ଭାଗ ଓ ବିଂଶ ଶତାବ୍ଦୀ ଆଦ୍ୟ ଭାଗର ଓଡିଆ ଓ ଓଡିଆଙ୍କର ଦୁଃସ୍ଥିତି ତଥା ଦୁର୍ଦ୍ଦଶା ତାଙ୍କର ସ୍ୱଦେଶ ପ୍ରେମୀ ପ୍ରାଣକୁ ଆଲୋଡ଼ିତ କରିବା ଅତ୍ୟନ୍ତ ସ୍ୱାଭାବିକ। ତାଙ୍କର ବହୁ କବିତାରେ ପ୍ରାଣର ସେହି ଆଲୋଡ଼ନ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିହେବ। କିନ୍ତୁ କେବଳ ସେତିକିରେ କ'ଣ ତାଙ୍କ ସ୍ୱଦେଶ ପ୍ରେମର ପର୍ଯ୍ୟବସାନ ? 'ଉତ୍କଳ ପ୍ରଭାତ' କବିତାରେ ସେ ଗାଇଛନ୍ତି -

ଉଠ ଗୋ ଦୁଃଖିନୀ ଉତ୍କଳ ଜନନୀ
ପାହିଛି ବିଷାଦ - ଯାମିନୀ ତବ
ଉଠି ଦେଖ ନଭେ ନବ ଦିନମଣି
ଶୁଣ ସୁପ୍ରଭାତେ ବିହଙ୍ଗ ରବ।
ନବୀନ ଚେ଼ତନେ ନବୀନ ଉଦ୍ୟମେ
ଜାଗି ଉଠିଛନ୍ତି ଜଗତ ଜନ
କିମ୍ପାଇଁ କହ ଗୋ ପ୍ରିୟ ମାତୃଭୂମି
ଅଛୁ ଅବସାଦ ନିଦ୍ରାମଗନ।
ଜାଗିଛି ୟୁରୋପ ଜାଗିଛି ମାର୍କିନ୍
ଉଡାଇ ଉନ୍ନତି - ବିଜୟ ଧ୍ୱଜା
ଆଦି ମଧ୍ୟଯୁଗ ଅଜ୍ଞାନ ଆଳସ୍ୟ
ତେଜି କରିଛନ୍ତି ସଭ୍ୟତ: ମଜ୍ଜା।

ଜାଗିଛି ଯାପାନ ଏହି ନିକଟରେ
କରିଣ ସାହସେ କର ମର୍ଦ୍ଦନ
ଆଦର ସମ୍ମାନେ ପାଇଅଛି ସର୍ବ
ସଭ୍ୟଜାତି ସହ ସମ ଆସନ୍ ।
ଅବସାଦ ତେଜି ଅଳପ ଅଳପ
ଜାଗୁଛନ୍ତି ନିଜେ ପ୍ରିୟ ଭାରତ
ବଙ୍ଗ ମହାରାଷ୍ଟ୍ର ଦ୍ରାବିଡ଼ ପଞ୍ଜାବ
ନବ ଜ୍ଞାନ-ଭାନୁ-କର ପ୍ରାପତ ।
କିମ୍ପା ତେବେ ପ୍ରିୟ ଉତ୍କଳ ଜନନୀ
ଅବସାଦ ନିଦ୍ରା ନ ଭାଙ୍ଗେ ତବ
ଫୁଟିଛି ପବିତ୍ର ଧର୍ମ-ସୁକୁସୁମ
ଶୁଭୁଅଛି ପୁଣ୍ୟ ପ୍ରଭାତ-ସ୍ତବ ।
ବିଜ୍ଞାନ-ଭାସ୍କର ସମୁଜ୍ଜ୍ୱଳ କରେ
ଧରା ମୁଖ ଛବି ଦିଶେ ଉଜ୍ଜ୍ୱଳ
ବିଜୟୀ ହୁଅନ୍ତି ସେହିମାନେ ଯେହୁ
ଜୀବନ ସଂଗ୍ରାମେ ଖଟାନ୍ତି ବଳ
- (ଜନ୍ମଭୂମି, ୨ୟ ଭାଗ)

ଏଥିରେ ଯେଉଁ ଚେତନା ପ୍ରକଟିତ, ତାହାକୁ ସଂକୀର୍ଣ୍ଣ ଓ ସୀମାବଦ୍ଧ ବୋଲି କହିହେବ କି ? କବି ନନ୍ଦକିଶୋରଙ୍କ ସ୍ୱଦେଶପ୍ରେମ କେତେ ଉଦାତ୍ତ ଓ ଉର୍ଦ୍ଧ୍ୱଗ, ତାହା ତାଙ୍କର ଅନ୍ୟ ଏକ କବିତାରୁ ସ୍ପଷ୍ଟ ହେବ -

ମନୁଷ୍ୟତା-ବିବର୍ଜିତ ହୋଇ କାଳବଳେ
ଆତ୍ମ ସ୍ୱାଧୀନତା
ନିଜ ଶକ୍ତି ଗଉରବ ପାସୋରି ଅଛନ୍ତି
ସ୍ୱଦେଶ ଜନତା ।
ଅନ୍ତରସ୍ଥ ବ୍ରହ୍ମଶକ୍ତି ନିଷ୍କର୍ମ ନିସ୍ତେଜ
କୁସଂସ୍କାର ଭାରେ

ମହାଶକ୍ତିମାନ ବହ୍ନି ଭସ୍ମ ସମାହିତ
ହୁଏ ଯେ ପ୍ରକାରେ ।
ସର୍ବସୃଷ୍ଟି ମଧ୍ୟେ ଏକା ମାନବ ପ୍ରଧାନ,
ମନ ମାନବର
ନିଖିଳ ଅବନୀ ପୂଜ୍ୟ ଯେଣୁ ସେ ମନରେ
ପ୍ରକାଶ ଈଶ୍ୱର ।
ଉଦ୍ଭିଦେ ମାନବେ ଜଡ଼େ ବିରାଜିତ ବ୍ରହ୍ମ
ଏହା ସତ୍ୟ ମାନେ
କୋଟି ଗୁଣେ ଶ୍ରେଷ୍ଠ ରୂପେ ନାହାନ୍ତି କି ବ୍ରହ୍ମ
ତବ ନିଜ ପ୍ରାଣେ !
ଆତ୍ମ ସମ୍ମାନକୁ ତେଜି କିମ୍ପାଇଁ ମନୁଜ
ମସ୍ତକ ଆନତ
ତ୍ରିଭୁବନେ ସମସ୍ତଙ୍କ କରି ପାଦ ପୂଜା
ଶଙ୍କିତ ସତତ ।
ଅମୃତର ପୁତ୍ର ନର, ବିସୋରିଣ ତତ୍ତ୍ୱ
ନୀଚତା ହୀନତା
ବକ୍ଷ ପତାଇଣ ନେଇ, ନିରାଶ ନିର୍ବିର୍ଯ୍ୟ
ସ୍ୱଦେଶ ଜନତା ।
ଉଠାଅ ମସ୍ତକ, ଯାହା କରିଛ ମାନବ
କରିବ ମାନବ
ଅପଭୟ ତେଜ, ଉଡୁ ନ୍ୟାୟ ସତ୍ୟ ଧ୍ୱଜା
ଚଲୁ ଧର୍ମନାବ ।
ଆତ୍ମ ଅଧିକାର ଆତ୍ମସ୍ୱତ୍ୱ କର ଦାବୀ
ମାନବ ମାନବୀ
ଅନ୍ୟେ ଦାସଦାସୀ କରି ନିଜେ ହେଲ ଦାସ
କହେ ସତ୍ୟ କବି ।

- ନିବେଦନ (ଜନ୍ମଭୂମି, ୨ୟ ଭାଗ)

## ଗଦ୍ୟ ସାହିତ୍ୟର ଗଭୀରତା

କାବ୍ୟକବିତା ସହିତ ଗଦ୍ୟ ରଚନାରେ ମଧ୍ୟ ନନ୍ଦକିଶୋର ହାତ ପାକଳ କରିଥିଲେ । ଅବଶ୍ୟ, ତାଙ୍କର ପଦ୍ୟ ସାହିତ୍ୟ ତୁଳନାରେ ଗଦ୍ୟ ସାହିତ୍ୟ ସାମାନ୍ୟ ଊଣା, କିନ୍ତୁ ତାହାର ଭାବ ବା ବିଷୟ ବସ୍ତୁରେ ରହିଛି ଗଭୀରତା - ଶୈଳୀରେ ରହିଛି ସ୍ୱଚ୍ଛନ୍ଦ ସାବଲୀଳତା । ପ୍ରାୟ ପାଞ୍ଚଟି ସାଧାରଣ ପ୍ରବନ୍ଧ, ଛଅଗୋଟି ସାହିତ୍ୟାଲୋଚନା ମୂଳକ ପ୍ରବନ୍ଧ, ଗୋଟିଏ ଗଳ୍ପ (ଲକ୍ଷ୍ମୀ - ୧୯୧୩). ଓ ଗୋଟିଏ ଉପନ୍ୟାସ (କନକଲତା - ୧୯୧୩ରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ କେତେକାଂଶ ଧାରାବାହିକ ଭାବରେ ପ୍ରକାଶ ପାଇଲା ପରେ ୧୯୨୫ରେ ଗ୍ରନ୍ଥାକାରରେ ପ୍ରକାଶିତ) ଆମେ ତାଙ୍କର ଲେଖନୀରୁ ପାଇଛୁଁ । କିନ୍ତୁ ଏହି ଗଦ୍ୟ ରଚନା-ସମ୍ଭାର ମଧ୍ୟରୁ 'କନକଲତା' ଉପନ୍ୟାସଟି ବ୍ୟତୀତ ଅନ୍ୟାନ୍ୟ ଗଦ୍ୟ ରଚନାର ସନ୍ତୋଷଜନକ ସମୀକ୍ଷା ଏପର୍ଯ୍ୟନ୍ତ ହୋଇପାରି ନାହିଁ । ବିଶେଷତଃ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ନନ୍ଦକିଶୋରଙ୍କ କୃତିତ୍ୱର ମୂଲ୍ୟାଙ୍କନ ଏଯାଏଁ କରାଯାଇ ନାହିଁ । ଏ ସଂପର୍କରେ 'ପଲ୍ଲୀକବି ନନ୍ଦକିଶୋର ସ୍ମାରକ - ଗ୍ରନ୍ଥ'ରେ ପ୍ରକାଶିତ ଡକ୍ଟର ଅନନ୍ତ ଚରଣ ଶୁକ୍ଳଙ୍କର 'ସମାଲୋଚକ ନନ୍ଦକିଶୋର' ପ୍ରବନ୍ଧରେ କିଞ୍ଚିତ୍ ଆଲୋକପାତ କରାଯାଇଛି ମାତ୍ର । ବାସ୍ତବିକ୍, ନନ୍ଦକିଶୋର ସଂସ୍କୃତ ସାହିତ୍ୟ ବିଦ୍ୟା ଓ ପାଶ୍ଚାତ୍ୟ ସାହିତ୍ୟ ବୀକ୍ଷାର ଧାରା ସମବାୟରେ ଓଡ଼ିଆ ସାହିତ୍ୟର ସମାଲୋଚନା କରିଛନ୍ତି । ଆଧୁନିକ ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ସେ ଆଦର୍ଶ ଓ ବାସ୍ତବତାର ସମସ୍ୟା ଉତ୍ଥାପନ କରିଛନ୍ତି, କାବ୍ୟିକ ସତ୍ୟ ଓ କାବ୍ୟିକ ନ୍ୟାୟ ମଧ୍ୟରେ ଦ୍ୱନ୍ଦ୍ୱ ଦର୍ଶାଇଛନ୍ତି । ତାଙ୍କର ଏହି ଆଲୋଚନା ବେଶ୍ ବସ୍ତୁନିଷ୍ଠ ଏବଂ ଯୁକ୍ତିଯୁକ୍ତ ବିଶ୍ଳେଷଣରେ ଭାସ୍ୱର, ଯାହା କି ବିଂଶ ଶତାବ୍ଦୀ ପ୍ରାରମ୍ଭ କାଳରେ ଅର୍ଥାତ୍ ଆମ ଆଧୁନିକ ସମାଲୋଚନା - ସାହିତ୍ୟର ପ୍ରାଥମିକ ଅବସ୍ଥାରେ ଥିଲା ଅତୁଳନୀୟ । ସର୍ବୋପରି, ସମାଲୋଚକ ଭାବରେ ସେ ଥିଲେ ନିରପେକ୍ଷ ଓ ନିର୍ଭୀକ । ସାହିତ୍ୟାଲୋଚନା ତାଙ୍କର ତୁଚ୍ଛା ପ୍ରଶଂସାସୂଚକ ବା ସ୍ତୁତିମୂଳକ ନୁହେଁ, ଦୋଷ ଦୁର୍ବଳତା ଓ ତ୍ରୁଟି ବିଚ୍ୟୁତିର ପ୍ରଦର୍ଶକ ମଧ୍ୟ । ସମକାଳୀନ ଅଗ୍ରଜ କବିମାନଙ୍କ ଉପରେ ସେ ଯେପରି ନିର୍ଭୀକ ଭାବେ ମନ୍ତବ୍ୟ ପ୍ରକାଶ କରିଛନ୍ତି, ତାହା ଏବେ ଆମକୁ ବିସ୍ମିତ କରେ । ତାଙ୍କର 'ଭକ୍ତି ଭାଜନ ଗୁରୁତୁଲ୍ୟ' କବି ରାଧାନାଥ ସେତେବେଳେ ଜୀବିତ । ରାଧାନାଥଙ୍କ କାବ୍ୟ ସାହିତ୍ୟର ବିସ୍ତୃତ ଆଲୋଚନାରେ ଗୁଣତକ ଦର୍ଶାଇ ଦେଇ ନନ୍ଦକିଶୋର ଲେଖିଚନ୍ତି - ''କବି ରାଧାନାଥଙ୍କ ଚିତ୍ରିତ ଅନେକ ନାୟକ - ନାୟିକାଙ୍କ ପ୍ରୀତି ରୂପଜ, ଶାରୀରିକ ସୌନ୍ଦର୍ଯ୍ୟଜ ପାର୍ଥିବ ପ୍ରଣୟ, ମାନସିକ ଲାବଣ୍ୟ ପ୍ରସୂତ ନିର୍ମଳ ନିଃସ୍ୱାର୍ଥ ପ୍ରୀତି ନୁହେଁ । ତାହା ପୃଥିବୀର, ସ୍ୱର୍ଗର

ନୁହେଁ । ତାହା କାମ, ପ୍ରେମ ନୁହେଁ । ସେ ଏମନ୍ତ ଚିତ୍ର ଉତ୍କଳକୁ ଦେଇପାରି ନାହାନ୍ତି, ଯାହା ଘେନି ଓଡିଆ ଜାତି ନବ ଯୁଗର ନବ ଆଦର୍ଶ ପ୍ରତି ଆକୃଷ୍ଟ ହେବ, ନବୀନ ଉଦ୍ୟମରେ ମାତି ପୃଥିବୀର ଉନ୍ନତ ଜାତିମାନଙ୍କ ସହ ଉନ୍ନତି-ପଥରେ ଜ୍ଞାନ, ପ୍ରୀତି ଓ କର୍ମର ଧ୍ୱଜା ହସ୍ତରେ ଧାରଣ କରି ଅଗ୍ରସର ହେବ । ନିଃସ୍ୱାର୍ଥ ପ୍ରୀତି ଭୀରୁକୁ ସାହସୀ କରାଏ, ସ୍ୱଦେଶ ଓ ସ୍ୱଜାତି ପାଇଁ ଜୀବନ ଉତ୍ସର୍ଗ କରାଏ । ଲଳିତା ଓ ନନ୍ଦିକା ଯାହା କଲେ, ଆଧୁନିକ ରାଜକନ୍ୟା ତାହା କଲେ ଜଗତ୍ କଣ କହିବ ? କବିର ଲେଖନୀ କଣ ନ କରିପାରେ ? ତାହା ନିର୍ଜୀବକୁ ଜୀବନ ଦିଏ, ନରକ କୀଟକୁ ତ୍ରିଦିବର ଦେବତା କରାଏ । କବି ସବୁ କରି ପାରନ୍ତି । ରାଧାନାଥ ଉତ୍କଳକୁ ମାର୍ଜିତ କବିତା ମୟୀ ଭାଷା ଦେଇ ଅଛନ୍ତି । କିନ୍ତୁ ହାୟ ! ରାଧାନାଥଙ୍କ ବିଷୟ-ନିର୍ବାଚନ ଅଧିକାଂଶ ସ୍ଥାନରେ ସମୁଚିତ ହୋଇ ନାହିଁ ।'' - (ପୃଷ୍ଠା ୯୭୨ - ୭୫)

ସେହିପରି ପୁଣି ସ୍ୱୀୟ ସାଧକ - ଗୁରୁ କବି ମଧୁସୂଦନଙ୍କ 'ଛାନ୍ଦମାଳା'ର ଦ୍ୱିତୀୟ ଭାଗ ଆଲୋଚନା କରି ତାହାର ଗୁଣ ସହିତ କେତେକ ଦୋଷ ଦର୍ଶାଇବାକୁ ନନ୍ଦକିଶୋର ପଶ୍ଚାତ୍‌ପଦ ହୋଇ ନାହାନ୍ତି (ପୃଷ୍ଠା - ୧୦୨୯) । ଏ ପ୍ରସଙ୍ଗରେ ଆମକୁ ମନେ ରଖିବାକୁ ହେବ ଯେ - ଛାତ୍ର ଓ ଶିକ୍ଷକ ଭାବରେ ନନ୍ଦକିଶୋର କବି ମଧୁସୂଦନଙ୍କ ଠାରେ ନାନା ଦିଗରୁ ଋଣୀ ଥିଲେ ।

ଊନବିଂଶ ଶତାବ୍ଦୀ ଶେଷ ଭାଗ ଓ ବିଂଶ ଶତାବ୍ଦୀ ପ୍ରାରମ୍ଭରେ ସାହିତ୍ୟ-ସୃଷ୍ଟିରେ ଭାଷା ପ୍ରୟାଗ ଘେନି ଓଡିଶାରେ ଦୁଇଟି ଭିନ୍ନ ମତ ପ୍ରଚଳିତ ଥିବାର ଜଣାପଡ଼େ । ଶୁଦ୍ଧ ମାର୍ଜିତ ସଂସ୍କୃତାନୁଗ ଭାଷାରେ ସାହିତ୍ୟ ସୃଷ୍ଟି ପାଇଁ ଗୋଟିଏ ମତ ପ୍ରକାଶ ପାଉଥିଲା ବଳେ, ଅନ୍ୟ ମତଟି ସରଳ ଗ୍ରାମୀଣ ଭାଷା ପ୍ରୟୋଗ ସପକ୍ଷରେ ଥିଲା । ପୁଣି, ଏହି ଦୁଇ ପ୍ରକାର ଭାଷାର ସମବାୟରେ ରଚିତ ସାହିତ୍ୟକୁ ଅନେକେ ପସନ୍ଦ କରୁ ନଥିଲେ- ତାହାକୁ 'ଗୁରୁ-ଗ୍ଣ୍ଡାଳ ଦୋଷ' ବୋଲି ନାକ ଟେକୁଥିଲେ । କବି ନନ୍ଦକିଶୋର ଭାଷା ପ୍ରୟୋଗ କ୍ଷେତ୍ରରେ ସମବାୟ ବାଦୀ ଥିଲେ । ତାଙ୍କର ଗଦ୍ୟ ସାହିତ୍ୟ ତଥା କାବ୍ୟ କବିତା - ଏପରି କି ପଲ୍ଲୀ - ବିଷୟକ କବିତାରୁ ଏହାର ପ୍ରମାଣ ମିଳେ । ସେ ସ୍ପଷ୍ଟ ଭାବରେ ଘୋଷଣା କରିଛନ୍ତି - ''ସଂସ୍କୃତ ଓ ଦେଶୀୟ ଶବ୍ଦମାନଙ୍କ ଏକତ୍ର ସମାବେଶକୁ ମୁଁ ଦୋଷ ନ ମଣି ଗୁଣ ବିବେଚନାରେ ଇଚ୍ଛା ପୂର୍ବକ (ଅସତର୍କତା ପ୍ରଯୁକ୍ତ ନୁହେଁ) ମୋ ରଚନାରେ ସ୍ଥାନ ଦେଇଥାଏଁ । ତେବେ ପ୍ରକୃତ ଗ୍ରାମ୍ୟ ଅଥବା ପ୍ରାଦେଶିକତା ପରିହାର୍ଯ୍ୟ - ଏହା ମୋର ମତ ।'' (ପୃଷ୍ଠା - ୧୦୯୮) କବି ରାଧାନାଥଙ୍କ କାବ୍ୟ ସାହିତ୍ୟ ଆଲୋଚନା ପ୍ରସଙ୍ଗରେ ମଧ୍ୟ ନନ୍ଦକିଶୋର ଅନୁରୂପ ମତ ପ୍ରକାଶ କରିଛନ୍ତି - ''ତାଙ୍କ ରଚନାରେ ସାଧୁ, ସଂସ୍କୃତ

ଓ ପ୍ରଚଳିତ ସହଜ ଶବ୍ଦ କଳାପର ବିଚିତ୍ର ସମାବେଶ ହୋଇଛନ୍ତି । ଅନେକେ ଏହାକୁ ଦୋଷ ବୋଲି ମଣନ୍ତି, କିନ୍ତୁ ମୁଁ ଏହାକୁ ଗୁଣ ଓ ଭାଷାର ସଜୀବତାର ଲକ୍ଷଣ ବୋଲି ମନେ କରେଁ ।'' (ପୃଷ୍ଠା - ୯୬୩) ରାଧାନାଥଙ୍କ କାବ୍ୟ କବିତାରୁ ବହୁ ଉଦାହରଣ ଦେଇ ସେ ନିଜ ମତର ଯଥାର୍ଥତା ପ୍ରତିପାଦନ କରିଛନ୍ତି । ଭାଷା ପ୍ରୟୋଗ ସଂପର୍କରେ ପ୍ରାୟ ଶହେ ବର୍ଷ ତଳେ ପ୍ରଦତ୍ତ ତଥା ଅନୁସୃତ ନନ୍ଦକିଶୋରଙ୍କ ଏହି ମତାଦର୍ଶ ଏବେ କିପରି ଆମ ସାହିତ୍ୟ ସୃଷ୍ଟିରେ ରୂପାୟିତ ହେଉଛି, ତାହା ଯେ-କୌଣସି ସଚେତନ ପାଠକ ସାଂପ୍ରତିକ ଗଳ୍ପ, ଉପନ୍ୟାସ, ନାଟକ, ପ୍ରବନ୍ଧ, କବିତାଦିରୁ ଲକ୍ଷ୍ୟ କରି ପାରିବେ ।

ନନ୍ଦକିଶୋରଙ୍କ ଦୂରଦୃଷ୍ଟି, ଅଗ୍ରଗାମୀ ଚିନ୍ତା ଓ ଉଦାର ଚେତନାର ପରିପ୍ରକାଶ ଘଟିଛି - ଭାରତର ଭବିଷ୍ୟତ ଭାଷା, ସାମାଜିକ ଯତ୍ କିଞ୍ଚିତ୍, ସଂଗ୍ରାମ ଓ ଜୀବନ ପ୍ରଭୃତି ସାଧାରଣ ପ୍ରବନ୍ଧରେ । ଭାରତର ଏକତା ଓ ସଂହତି ସକାଶେ ଧର୍ମ, ଶାସନ ଓ ଭାଷା କ୍ଷେତ୍ରରେ ଏକତାର ଆବଶ୍ୟକତା ଦର୍ଶାଇ ନନ୍ଦକିଶୋର ହିନ୍ଦୀ ଭାଷାକୁ ହିଁ ଦେଶର ଭବିଷ୍ୟତ୍ ଭାଷା ବା ରାଷ୍ଟ୍ରଭାଷା ହେବା ପାଇଁ ଉପଯୁକ୍ତ ବୋଲି ମତ ପ୍ରକାଶ କରିଛନ୍ତି । ଖ୍ରୀଷ୍ଟୀୟ ୧୯୦୦ ମସୀହାରେ ପ୍ରକାଶିତ ଏହି ଅଭିମତ ଏକ ପ୍ରକାର ଦୈବବାଣୀ ଭଳି ମନେ ହୁଏ । ତାଙ୍କ ମତରେ - ଭାରତରେ ହିନ୍ଦୀଭାଷୀ ଓ ହିନ୍ଦୀପ୍ରସୂତ ହିନ୍ଦୁସ୍ଥାନୀ ଭାଷୀ ଜନସଂଖ୍ୟା ଅଧିକ, ଏ ଭାଷା ସହଜରେ ବୁଝି ହୁଏ ଏବଂ ବ୍ୟବହାର କରିହୁଏ, ପୁଣି - ''ଉର୍ଦ୍ଦୁ ହିନ୍ଦୀ ମିଶ୍ରିତ ଭାଷା ଥିବାରୁ ହିନ୍ଦୀର ପ୍ରଚଳନ ଭାରତର ଉଭୟ ବାହୁ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଏକତା ଓ ସୌହାର୍ଦ୍ଦ୍ୟ ସଂସ୍ଥାପିତ କରି ଭାରତର ପ୍ରକୃତ ଉନ୍ନତିର ପଥ ପରିଷ୍କାର କରିଦେବ । ହିନ୍ଦୀ ଏକଆଡ଼େ ଯେପରି ଓଜଃପୂର୍ଣ୍ଣ, ଅନ୍ୟଆଡ଼େ ସେପରି ମଧୁର । କିନ୍ତୁ ବଙ୍ଗଳା ଭାଷାରେ ପ୍ରଥମୋକ୍ତ ଗୁଣ ନାହିଁ । ଉକ୍ତ କାରଣରୁ ବୋଧହୁଏ ବଙ୍ଗାଳୀମାନେ ରୁଷ୍ଟ ହେଲେ, ହିନ୍ଦୀ ସ୍ୱତଃ ସେମାନଙ୍କ ମୁଖରୁ ନିଃସୃତ ହୁଏ । ହିନ୍ଦୀଭାଷା ମଧ୍ୟ ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟର ଗରିମାରେ ସମ୍ମାନାର୍ହ । ଜଗତ୍ ବିଖ୍ୟାତ ଚ୍ଚନ୍ଦକବି ଓ ତୁଳସୀ ଦାସ ପ୍ରଭୃତି ମହାତ୍ମା ବୃନ୍ଦ ଏହି ହିନ୍ଦୀ ଭାଷାରେ ସେମାନଙ୍କ ଅମର ସଂଗୀତ ବୀଣା ବଜାଇ ଗାନ କରି ଯାଇଅଛନ୍ତି । ଅତଏବ ଯେବେ ଭାରତରେ ଏକ ଭାଷା ପ୍ରଚଳିତ ହେବାର ଏକାନ୍ତ ଏବଂ ପ୍ରୟୋଜନୀୟତା ଥାଏ, ତେବେ ସେ ଭାଷା ହିନ୍ଦୀ ଛଡା ଅନ୍ୟ କୌଣସି ଭାଷା ହୋଇ ନପାରେ ।'' (ପୃଷ୍ଠା - ୧୦୩୭)

ବିଧବା ବିବାହ, ଜାତିଭେଦ, ଉଦ୍‌ଯୋଗ କର୍ମର ମହତ୍ତ୍ୱ, ସଂଗ୍ରାମଶୀଳ ମଣିଷ ଜୀବନର ବୈଶିଷ୍ଟ୍ୟ ଆଦି ବିଷୟରେ ନନ୍ଦକିଶୋରଙ୍କ ଯୁକ୍ତିଯୁକ୍ତ ଅଭିମତ

ଏବେ ସୁଦ୍ଧା ଆମ ପାଇଁ ପ୍ରାସଙ୍ଗିକ ଓ ଉପଯୋଗୀ ହୋଇ ରହିଛି । କବିଙ୍କର ସମାଜ ସଂସ୍କାର ମୂଳକ ଆଧୁନିକ ଦୃଷ୍ଟିକୋଣ ବିଭିନ୍ନ ପ୍ରବନ୍ଧ ମଧ୍ୟରେ ସ୍ପଷ୍ଟ ପ୍ରତିଭାତ ହୋଇଛି । ଉଦାହରଣ ସ୍ୱରୂପ - ନିରର୍ଥକ ଜାତ୍ୟାଭିମାନ ପ୍ରତି ଆକ୍ଷେପ କରି ନନ୍ଦକିଶୋର କହିଛନ୍ତି - ''ବ୍ରାହ୍ମଣ କ୍ଷତ୍ରିୟମାନେ  ଜାତିଭେଦ ଓ ବଂଶ ମର୍ଯ୍ୟାଦା ଘେନି ବ୍ୟସ୍ତ ହୋଇ ଆଧୁନିକ ଉନ୍ନତି ସ୍ରୋତରେ ନିଜକୁ ଭାସମାନ କଲେ ନାହିଁ । କେବଳ ପୂର୍ବାବସ୍ଥାକୁ ସ୍ମରଣ କରି ସମାଜକୁ ଭ୍ରୂକ୍ଷେପ ନକଲେ ମଧ୍ୟ ନିଜର କଳ୍ପିତ ଶ୍ରେଷ୍ଠତାରେ ସ୍ଫୀତ ହେଲେ । ଜାତି ଗଲାଣି, ଯାଉଅଛି ଓ ଯିବ । ଯାହା ଯିବ, ତାହା ସପକ୍ଷରେ ଦଣ୍ଡାୟମାନ ହୋଇ ବୃଥା ଉଦ୍ୟମ, ଉତ୍ସାହ ନଷ୍ଟ କରିବା ବୁଦ୍ଧିମତ୍ତାର କାର୍ଯ୍ୟ ନୁହେଁ । ପ୍ରକୃତି ଯାହାର ବିରୋଧୀ, କାହାର ସାଧ୍ୟ ତାକୁ ରକ୍ଷା କରିବ ? ଇତାହାସ - ପାଠକ ମାତ୍ରେ ଜାଣନ୍ତି ଯେ - ଜାତି ଈଶ୍ୱର ସୃଷ୍ଟ ନୁହେଁ । କୌଣସି ବିଶେଷ ଯୁଗର ସାମାଜିକ ଶୃଙ୍ଖଳା ନିମିତ୍ତ ମାନବୀୟ ଉଦ୍‌ଭାବନ ମାତ୍ର । ସକଳ ଯୁଗରେ ଏହା ପ୍ରଯୁଜ୍ୟ ନୁହେଁ । ଆଜି ଯାହା ଉପକାରୀ, କାଲି ସେ କେବଳ ଅନୁପକାରୀ ତାହା ନୁହେଁ, ଅନେକ ସ୍ଥଳରେ ତାହା ଅନିଷ୍ଟକାରୀ । ବର୍ତ୍ତମାନ ଜାତିପ୍ରଥା ତାହା ହିଁ ହୋଇଛି ।'' (ପୃଷ୍ଠା - ୧୦୪୫-୫୫) ଏବେ ସୁପରିଚିତ ମଣ୍ଡଳ କମିଶନର ସୁପାରିଶ୍ ଏବଂ ସାରା ଭାରତରେ ତଜ୍ଜନିତ ଅଶାନ୍ତି - ଉପଦ୍ରବ ପରିପ୍ରେକ୍ଷୀରେ ସେତେବେଳେ ନନ୍ଦକିଶୋରଙ୍କ ଏହି ଭବିଷ୍ୟତ ବାଣୀର ତାତ୍ପର୍ଯ୍ୟ ଆମେ ସହଜରେ ଉପଲବ୍ଧି କରି ପାରିବା ।

ସେହିପରି, ବିଧବା ବିବାହ ଓ ସତୀତ୍ୱ ସଂପର୍କରେ କବି ନନ୍ଦକିଶୋରଙ୍କ ଅଭିମତ ତତ୍‌କାଳୀନ ଶଗଡ଼ ଗୁଳାରେ ପଡ଼ି ନଥିଲା । କବି ଲେଖିଛନ୍ତି - ''ବିଧବା ବିବାହ ବିପକ୍ଷରେ ଗୋଟିଏ ଆପତ୍ତି ଏହି ଯେ, ଏହା ପ୍ରଚଳିତ ଥିଲେ ସ୍ତ୍ରୀମାନଙ୍କ ସତୀତ୍ୱ ନଷ୍ଟ ହେବ । ଆମ୍ଭେମାନେ କହୁଁ ଠିକ୍ ବିପରୀତ । ଗୋଟିଏ ନାରୀ ଯୌବନୋଦୟ ପୂର୍ବରୁ କିମ୍ବା କିଞ୍ଚିତ୍ ପରେ ବିଧବା ହେଲେ, ତାହାର କୌଣସି ଜଣକୁ ଆଶ୍ରୟ କରି ଚଳିବା ଉଚିତ୍, ନା,' ନିରାପଦ ନାମରେ ସମାଜକୁ କଳଙ୍କିତ କରି ସୁନାର ସଂସାର ଚୂନା କରିବା ଶ୍ରେୟସ୍କର ? ପୃଥିବୀର ଯାବତୀୟ ପ୍ରବଳ ପରାକ୍ରାନ୍ତ ଜାତି ମଧ୍ୟରେ ବିଧବା ବିବାହ ପ୍ରଚଳିତ । ହେ ଆଧୁନିକ ହିନ୍ଦୁ ! ତୁମ୍ଭର ପ୍ରବଳ ପରାକ୍ରାନ୍ତ ରାଜା ଇଂରେଜ ଜାତି, ଯାହାଙ୍କର ଉପାହନ ଲେହନ ତୁମ୍ଭର ସୁଭଗ କାର୍ଯ୍ୟ, ସେମାନେ ବିଧବା ବିବାହ କରନ୍ତି, ସେମାନେ ସମସ୍ତେ କି ଅସତୀ ପୁତ୍ର ? ଆଉ ତୁମ୍ଭେ ସମସ୍ତେ ସାଧ୍ୱୀ ସନ୍ତାନ ? ସ୍ମରଣ କର ବୈଦିକ କାଳର ଋଷିବୃନ୍ଦଙ୍କୁ । କେଉଁ ମୁଖରେ କହିବ, ବୈଦିକ ଋଷି ଅପେକ୍ଷା ତୁମ୍ଭେ ଶ୍ରେଷ୍ଠତର ? ସେମାନେ ତ ବିଧବା ବିବାହ କରୁଥିଲେ । ଇତିହାସ ଦେଖ । ତୁମ୍ଭର ପିତାମହ କରିଥିଲେ । ତୁମ୍ଭେ କାହିଁକି ଉଦ୍ଭଟ ସଭ୍ୟତା -

ଗହ୍ୱରକୁ ପ୍ରଧାବିତ ହେଉଛ ? ଉଚ୍ଚ ବଂଶର ପରିଚୟ ସ୍ୱରୂପ ଉପବୀତ ସୂତ୍ର, ବ୍ରତାଦି ଅନୁଷ୍ଠାନ ଅଛି । ବିଧବା ବିବାହ ତହିଁରେ କୌଣସି ବାଧା ଦେବ ନାହିଁ । ମନୁ, ପରାଶରାଦି ମନ୍ଥନ କରି ପୁଣ୍ୟଶ୍ଳୋକ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବିଧବା ବିବାହ - ବିଧି ସଂକଳନ କରି ଅଛନ୍ତି । ବିଧବା-ବିବାହ ଶାସ୍ତ୍ର ସମ୍ମତ ।'' (ପୃଷ୍ଠା - ୧୦୫୫-୫୬)

ନନ୍ଦକିଶୋରଙ୍କ ଏହି ସମାଜ-ସଂସ୍କାର ମନୋବୃତ୍ତି 'କନକଲତା' ଉପନ୍ୟାସ ଓ 'ଲକ୍ଷ୍ମୀ' ଗଳ୍ପରେ ମଧ୍ୟ ପ୍ରକଟିତ ହୋଇଛି । ଆମ ପାରମ୍ପରିକ ମଧ୍ୟବିତ୍ତ ସମାଜର ନରନାରୀଙ୍କ ମଧ୍ୟରେ ଥିବା ବିଭିନ୍ନ ସଂପର୍କ, ଜାତିଆଣ ଭାବ, ଯୌତୁକ ପ୍ରଥା, ବିଧବା ବିବାହ ଆଦି ସମସ୍ୟାର ଅବତାରଣା ଯେପରି 'କନକଲତା'ରେ କରାଯାଇଛି, ସେହିପରି 'ଲକ୍ଷ୍ମୀ'ରେ କନ୍ୟାସୁନା ପ୍ରଥା ପ୍ରତି ଉପହାସ ସହିତ ମଧୁର ଦାମ୍ପତ୍ୟ ପ୍ରେମର ଜୟଗାନ କରାଯାଇଛି । କଥା ସାହିତ୍ୟର ଆଖ୍ୟାନ ଭାଗ ବର୍ଣ୍ଣନାରେ ନନ୍ଦକିଶୋର ପରିଚ୍ଛନ୍ନତା ଓ ସାବଲୀଳତା ବଜାୟ ରଖିଛନ୍ତି । ଫକୀରମୋହନ - ସୁଲଭ ଗ୍ରାମୀଣ ଶୈଳୀ ଓ ଭାଷା ସେ କ୍ୱଚିତ୍ ବ୍ୟବହାର କରିଛନ୍ତି । ବସ୍ତୁତଃ ଭାଷା ପ୍ରୟୋଗ କ୍ଷେତ୍ରରେ ତାଙ୍କର ଗଦ୍ୟ ରଚନା ଓ ପଦ୍ୟ ରଚନା ମଧ୍ୟରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । 'କନକଲତା' ଉପନ୍ୟାସର ଚତୁର୍ଦ୍ଦଶ ପରିଚ୍ଛେଦ ତଥା ଅନ୍ୟ କେତେକ ସ୍ଥାନରେ ବିଧବା ଉମା ପ୍ରସଙ୍ଗ ବର୍ଣ୍ଣନା ଏବଂ 'ପଲ୍ଲୀଚିତ୍ର' ତୃତୀୟ ଭାଗସ୍ଥ 'ବାଲ୍ୟବିଧବା' କବିତାରେ ବର୍ଣ୍ଣନାର ଭାଷା ତୁଳନା କଲେ, ଏହା ସହଜରେ ପ୍ରତିପନ୍ନ ହେବ । ଗଦ୍ୟ ହେଉ, ପଦ୍ୟ ହେଉ - ସାଧାରଣତଃ ସର୍ବଜନ ବୋଧ୍ୟ ମାନକ ଭାଷା ନନ୍ଦକିଶୋରଙ୍କ ସାହିତ୍ୟ ସୃଷ୍ଟିର ବାହନ, ଅବଶ୍ୟ ହଂସ ସହିତ ପାତିହଂସ ମିଶିଗଲା ପରି ତାହ ସହିତ ମଝିରେ ମଝିରେ ଦେଶଜ ଶବ୍ଦ, ରୂଢି-ପ୍ରବଚନାଦି ଲୋକୋକ୍ତି ସମନ୍ୱିତ ହୋଇଥିବାରୁ ନନ୍ଦକିଶୋରଙ୍କ ଶୈଳୀ ମନୋଜ୍ଞ ହୋଇ ଉଠିଛି । 'କନକଲତା' ଉପନ୍ୟାସରୁ ଗୋଟିଏ ଉଦାହରଣ - ''ହରିଆ ଗ୍ୱକର ଗୋରୁମାନଙ୍କୁ ଗୁହାଳୁ ନେଇ ଦାଣ୍ଡରେ ବାନ୍ଧିଲାଣି । ଦାଣ୍ଡକୁ ସୁନ୍ଦର ଗୋରୁ, ଘରକୁ ସୁନ୍ଦର ଜୋରୁ । ରାଜେନ୍ଦ୍ର କିନ୍ତୁ କହନ୍ତି, ଦାଣ୍ଡରେ ଗୋରୁ ବାନ୍ଧି ତାହାକୁ ଦୁର୍ଗନ୍ଧମୟ ଓ ଅସ୍ୱାସ୍ଥ୍ୟକର କରିବା - ଘର ସାମନାରେ ଗୁହାଳ ଓ ଗୋବରଗଦା କରିବା ଆଦିମ ବର୍ବରତାର ନିଦର୍ଶନ । ସେ ଯାହାହେଉ, ଦାମୁଡ଼ି ଓ ବାଛୁରିମାନେ ଭାବି ସ୍ୱାମୀଙ୍କର ଉଚ୍ଚ ସମାଜତତ୍ତ୍ୱ ପ୍ରତି ଭ୍ରୂକ୍ଷେପ ନକରି ପଦାରେ କଅଁଳ ଖରାରେ ଶୋଇଛନ୍ତି ।'' (ଷଷ୍ଠ ପରିଚ୍ଛେଦ)

ପାତ୍ର ପାତ୍ରୀଙ୍କ ସଂଳାପ ସଂଯୋଜନାରେ ନନ୍ଦକିଶୋରଙ୍କ ଗଦ୍ୟ ଶୈଳୀ ଚମତ୍କାରିତା ଲାଭ କରିଛି । ଉପନ୍ୟାସରେ ସେପରି ସଂଳାପ ବେଶି ବ୍ୟବହୃତ ହୋଇ

ନଥିଲେ ହେଁ, ତାଙ୍କର 'ଲକ୍ଷ୍ମୀ' ଗଳ୍ପରେ ତାହା ବିଶେଷ ଭାବରେ ପ୍ରୟୋଗ କରାଯାଇଛି । ତହିଁର କିୟଦଂଶ -

"ଲକ୍ଷ୍ମୀ - ବିବାହ ତ ହେଲା ପରସ୍ପର ଆଦାନ ପ୍ରଦାନ ! ଟଙ୍କା ନେବା ଉଚିତ୍ ନୁହେଁ, ଏକଥା ମୁଁ ଖଣ୍ଡେ କାଗଜରେ ପଢ଼ିଥିଲି । ସ୍କୁଲରେ ପଢ଼ିବା ସମୟରେ ମିସିବାବା ମଧ୍ୟ ମତେ ଏସବୁ କଥା ବୁଝାଇ ଦେଇଥିଲେ ।

ନାରାୟଣ - କିନ୍ତୁ ତାହା ଭସା କଥା । ଭିତରେ ପ୍ରବେଶ କରି ଦେଖିଲେ ବୁଝି ପାରିବ ଯେ ଯେତେଦିନ ସ୍ୱାଧୀନ ପ୍ରଣୟ ବା ସ୍ୱୟମ୍ବର ନ ହେବ, ସେତେଦିନ ଧନ କିମ୍ବା ଜାତି କିଛି ହେଲେ ପଣର ବିଷୟ ରହିଥିବ ।

ଲକ୍ଷ୍ମୀ - ଟଙ୍କା ଦେଇ ମୋତେ କିଣିଥିଲେ, ମୋ ପ୍ରତି ତୁମ୍ଭର ଘୃଣା ହୁଅନ୍ତା ।

ନାରାୟଣ - ମୋ ପ୍ରତି ପ୍ରଣୟ ନଥିଲେ ମୋ ଘୃଣାରେ କ୍ଷତି କ'ଣ ?

ଲକ୍ଷ୍ମୀ - ଗ୍ରାମରେ ଲୋକ କ'ଣ କହନ୍ତେ ? ଲୋକନିନ୍ଦା ତ ଅଛି !

ନାରାୟଣ - ଧରାପଡ଼ିଯାଇଛ । ତୁମ୍ଭେ ତ କାହାରିକୁ ଟଙ୍କା ଦେଖାଇ ନାହଁ ! ବରଂ ଆଉ ଗୋଟିଏ ଅଧିକତର ଭୟଙ୍କର ଲୋକନିନ୍ଦା ବହନ କରି ମୋତେ ଗୋପନ ଭାବରେ ଟଙ୍କା ଦେଲ ।

ଲକ୍ଷ୍ମୀ - ତାହା ତୁମ୍ଭଙ୍କୁ ଭୁଲାଇବାକୁ ହୋଇପାରେ । କହୁଥିଲ ପରା ସ୍ତ୍ରୀମାନେ ବଡ଼ ଚତୁର, କପଟଶୀଳା, କିମ୍ବା ତୁମ୍ଭ ପ୍ରତି ଦୟାର୍ଦ୍ର ହୋଇ ଏପରି କରି ପାରିଥାଏଁ । ବାପାଙ୍କର କେହି ନାହିଁ । କିଏ ଖାଇବ ? ଦୁଷ୍ଟ ଲୋକ ନିଅନ୍ତେ । ଏଣେ ତୁମ୍ଭର ବଡ଼ କଷ୍ଟ ହୁଅନ୍ତା । ତେଣୁ କୃପା କରିଥିବି ଏବଂ ତୁମ୍ଭେ କହୁଥିଲ କୃପା ପ୍ରେମର ବିରୋଧୀ ।

ନାରାୟଣ - ତୁମ୍ଭର ପ୍ରଖର ବୁଦ୍ଧିରେ ମୁଁ ସ୍ତବ୍ଧ, ଚକିତ, ପରାସ୍ତ । କିନ୍ତୁ ବୁଦ୍ଧିରୁ କି ପାଇବି ? ମୁଁ ପ୍ରେମ ପ୍ରବଣ ହୃଦୟ ଗ୍ରହେଁ । ପ୍ରାଣର ଏ ଆଶା କି ପୂର୍ଣ୍ଣ ହେବ ନାହିଁ ? ହା, ଅମୃତ ନଦୀ ତଟରେ ବସି ତୃଷାରେ ପ୍ରାଣ ଯିବ?"

**ଉପସଂହାର**

ସାହିତ୍ୟ ସୃଷ୍ଟିରେ ପଲ୍ଲୀପ୍ରାଣତା, ଗଭୀର ସ୍ୱଦେଶ ପ୍ରେମ ଓ ପରମ୍ପରାନୁଗ ପୁରୋଦୃଷ୍ଟି ପାଇଁ କବି ନନ୍ଦକିଶୋର ଅକ୍ଷର କୀର୍ତ୍ତିରେ ଆମ ଜାତୀୟ ଜୀବନରେ

ଭାସ୍ୱର ହୋଇ ରହିବେ କାଳ କାଳ ପାଇଁ । ରାଜନୀତି ଓ ସମାଜ ସେବା କ୍ଷେତ୍ରରେ ମହାତ୍ମା ଗାନ୍ଧି ତଥା ଅନ୍ୟାନ୍ୟ ନେତୃସ୍ଥାନୀୟ ବ୍ୟକ୍ତିମାନେ ଭାରତର ପ୍ରାଣ - ଗ୍ରାମାଞ୍ଚଳକୁ ଦୃଷ୍ଟିଦେବା ପାଇଁ ପରାମର୍ଶ ଦେବାର ବହୁ ପୂର୍ବରୁ ସେ ସାଂସ୍କୃତିକ କ୍ଷେତ୍ରରେ ସେହି ମହତ୍ କାର୍ଯ୍ୟଟି ସମାହିତ କରିଥିଲେ । ଆମର ପ୍ରଥାବଦ୍ଧ ସମାଜର ବିଭିନ୍ନ କ୍ଷେତ୍ରରେ କୁସଂସ୍କାର, ଅନ୍ଧ ବିଶ୍ୱାସ ଓ ଭ୍ରାନ୍ତ ଉତ୍ସାହାଦି ବିରୋଧରେ ସେ ନିର୍ଭୀକ ଭାବରେ କଲମରୂପୀ ବଲମ ଚଳାଇଥିଲେ, ଯାହା ଏବେ ବି ଅନାବଶ୍ୟକ ହୋଇ ପଡ଼ି ନାହିଁ । ସେଥିପାଇଁ ସାମ୍ପ୍ରତିକ କାଳରେ ତାଙ୍କ ସାହିତ୍ୟ ସୃଷ୍ଟିର ପ୍ରାସଙ୍ଗିକତା ଓ ଉପଯୋଗିତା ଆମେ ବହୁ ପରିମାଣରେ ଉପଲବ୍ଧି କରୁଛୁ ।

ଚିନ୍ତା ଓ ଚେତନାରେ ନନ୍ଦକିଶୋର ଥିଲେ ବିଦ୍ରୋହୀ - ସାଧାରଣ ଶଗଡ଼ ଗୁଳାରୁ ବାଟ ଭାଙ୍ଗିଯିବାର ବ୍ୟକ୍ତି । ନୂତନ ଗୁଳା ତିଆରି ପାଇଁ ସେ ଅଣ୍ଟା ଭିଡ଼ି ଥିଲେ, ମାତ୍ର ଅତି ସନ୍ତର୍ପଣରେ ସେହି ଅଣ୍ଟାଭିଡ଼ା । ପ୍ରବଳ ସାମାଜିକ ଓ ସରକାରୀ ଅନୁଶାସନ ମଧ୍ୟରେ କ୍ରମେ ସେ ଆବଦ୍ଧ ହୋଇ ଯିବାରୁ ବୋଧହୁଏ ତାଙ୍କର ଅଣ୍ଟା ହୁଗୁଳି ଗଲା । ତାଙ୍କର ବିଦ୍ରୋହୀ ମନପ୍ରାଣ ସଂକୋଚର ବିହ୍ୱଳତାରେ ଲକ୍ଷ୍ୟଭ୍ରଷ୍ଟ ହୋଇଗଲା ପରି ଜଣାପଡ଼େ । ବିଧବା ବିବାହ ସଂପର୍କରେ ଏତେ ଉଚ୍ଚବାଚ କରି ମଧ୍ୟ ନନ୍ଦକିଶୋର ଆପଣା 'କନକଲତା' ଉପନ୍ୟାସରେ (ଏଥିରେ ତିନିଗୋଟି ବିଧବା ଚରିତ୍ର ଚିହ୍ନିତ) ବାଲ୍ୟ ବିଧବା ଉମାର ବିବାହ କରାଇ ପାରି ନାହାନ୍ତି - ଜାତି ଭେଦର ଅସାରତା ଦର୍ଶାଇଥିଲେ ମଧ୍ୟ ନିଜେ 'ମହାନାୟକ ସମିତି' ସହ ଜଡ଼ିତ ହୋଇ ପଡିଛନ୍ତି - ସାହିତ୍ୟ ସାଧନା ପାଇଁ "ଦରିଦ୍ର କୁଟୀରରେ ଜୀବନ ଯାପିବା" ପାଇଁ ପ୍ରସ୍ତୁତ ହୋଇ ମଧ୍ୟ ଶେଷରେ "ବାଣୀ - ଆରାଧନା ତେଜି ସଂସାର ସେବିଛନ୍ତି" । ବହମାନ୍ ବିରୂପାର ବିକ୍ଷୁବ୍ଧ ବୀଚି ସେ, କୂଳ ପ୍ଲାବନରେ ପଟୁ ପକାଇ ନିଜ ମାଟିରୁ ଭଲ ଫସଲ ଫଳାଇବା ତାଙ୍କର ଲକ୍ଷ୍ୟ ଥିଲେ ହେଁ ତଟଦେଶରେ ମଥା ପିଟି ପିଟି ଅନ୍ତରର ଆଲୋଡ଼ ହିଁ ସେ ପ୍ରକାଶ କରିଗଲେ । ଏ ବିଷୟରେ ସଚେତନ ଥାଇ କବି ସ୍ୱୟଂ ଲେଖିଛନ୍ତି -

> କେତେ କେତେ ଉଚ୍ଚ କଥା କହେଁ ମୁଁ ବଚନେ,
> କେତେ କେତେ ଦୁର୍ବଳତା ଅଛି ମୋର ମନେ,
> ଅନ୍ତର୍ଯ୍ୟାମୀ ଜାଣ୍ ସବୁ ମୋ ପ୍ରାଣ - ଦୀନତା,
> କେବେ ହେବ ପ୍ରଭୋ, କଥା-ଜୀବନ-ସମତା ?

- କଥା ଓ ଜୀବନ (ନିର୍ମାଲ୍ୟ)

କବିଙ୍କ ମନ କଥାର ଏହି ଅକପଟ ସ୍ୱୀକାରୋକ୍ତି ମଧ୍ୟରେ ଥିବା ଉତ୍ତରଣର ଉଦଗ୍ର କାମନା - କୂଳ ପ୍ଳାବନର ପ୍ରବଳ ପ୍ରୟାସ ଆମ ସମସ୍ତଙ୍କ ପକ୍ଷରେ ସ୍ପୃହଣୀୟ ଓ ପରିପାଳନୀୟ ନୁହେଁ କି ?

## ଆକର ଓ ସହାୟକ ରଚନାବଳୀ


୧) ଏହି ଆଲୋଚନାରେ କବି ନନ୍ଦକିଶୋରଙ୍କ ରଚନା ବଳୀରୁ ସମସ୍ତ ଉଦ୍ଧୃତି 'ନନ୍ଦକିଶୋର ଗ୍ରନ୍ଥାବଳୀ', ୧୯୬୨ରେ ପ୍ରକାଶିତ ଦ୍ୱିତୀୟ ସଂସ୍କରଣରୁ ଗୃହୀତ । ପ୍ରକାଶକ - ଶ୍ରୀ ହେମନ୍ତ କିଶୋର ବଳ ଓ ଶ୍ରୀ ବସନ୍ତ କିଶୋର ବଳ, କଟକ - ୨

୨) ନନ୍ଦକିଶୋର ସାହିତ୍ୟ - ସମୀକ୍ଷା - ଡକ୍ଟର ନଟବର ସାମନ୍ତରାୟ, ଓଡିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର (୧୯୬୪)

୩) ପଲ୍ଲୀକବି ନନ୍ଦକିଶୋର ସ୍ମାରକ ଗ୍ରନ୍ଥ - ପ୍ରକାଶକ ଜେ. ମହାପାତ୍ର ଏଣ୍ଡ୍ କୋ, ଛାତ୍ରସାଥୀ ଅଫିସ୍, ନିମଚଉଡ଼ି, କଟକ - ୨ (୧୯୭୬)

୪) ଗୋଟିଏ ଫୁଲ ଫୁଟିବାର କାହାଣୀ - ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ, ମୟୂର ପବ୍ଲିକେସନସ୍, ଖାରବେଳ ନଗର, ଭୁବନେଶ୍ୱର (୧୯୯୩)

୫) Cassell's Encyclopaedia of Literature, Vol. I, Edited by S.H.Steinberg, Cassell & Company Ltd., London (1953).

